# କସ୍ତୁରୀ ନଦୀର ଗନ୍ଧ

**ଶ୍ରୀ ବନମାଳୀ ବାରିକ, ଏମ୍. ଏ.**

ପ୍ରକାଶକ :
**ପୁସ୍ତକ ଭଣ୍ଡାର**
ବାରକ୍ସ, ବ୍ରହ୍ମପୁର-୧
ବାଙ୍କା ବଜାର, କଟକ-୨

ପ୍ରଥମ ପ୍ରକାଶ
ଦ ଶ ହ ର
ଅକ୍ଟୋବର ୧୯୮୦

ମୁଦ୍ରାକର :
ନଉ ଷ୍ଟୋର୍ସ ପ୍ରେସ୍
ବ୍ରହ୍ମପୁର-୨

ପ୍ରଚ୍ଛଦପଟ୍ଟ
ଶିବ ପାଣିଗ୍ରାହୀ

ମୂଲ୍ୟ – ଛ' ଟଙ୍କା

**KASTURI NADIRA GANDHA**

( A collection of Oriya Poems )

By
*Sri Banamali Barik*, M. A.

Published by
PUSTAK BHANDAR
Barracks, Berhampur-1
&
Banka Bazar, Cuttack-2

*First Printing :*
*DASAHARA*
October, 1980

Printed by
**New Stores Press**
Berhampur-2

**PRICE Rs. Six only**

ମୋର କାବ୍ୟାମୋଦୀ ବଂଧୁମାନଙ୍କ ହାତରେ

# କୃତଜ୍ଞତା ସ୍ୱୀକାର

※ ଶ୍ରୀଯୁକ୍ତ ହରେକୃଷ୍ଣ ଦାସ

ମୋ ସାଧନାର ପ୍ରଥମ ପ୍ରେରଣା

※ ଦୈନିକ 'ଧରିତ୍ରୀ' (ରବିବାର ସାହିତ୍ୟ ବିଭାଗ)

କୁଣ୍ଠାହୀନ ସାଦର ସ୍ୱୀକୃତି

※ ଡ଼: କ୍ଷେତ୍ରବାସୀ ନାୟକ

ଅନ୍ତରଂଗ ଉତ୍ସାହ ଧାରା

※ ଶ୍ରୀଯୁକ୍ତ ନିତ୍ୟାନନ୍ଦ ଦାଶ

ରୁଚିବନ୍ତ ପ୍ରକାଶନର ସଫଳତା

※ ଅଧ୍ୟାପକ ଡ଼: ଗଗନେନ୍ଦ୍ର ନାଥ ଦାଶ, ଡକ୍ଟର ବ୍ରହ୍ମାନନ୍ଦ ସିଂହ, ଅଧ୍ୟାପକ ଦୁର୍ଗାଚରଣ ପଟ୍ଟନାୟକ, ଅଧ୍ୟାପକ ନରସିଂହ ବାମନ ପ୍ରଧାନ, ଶ୍ରୀ ଲକ୍ଷ୍ମୀନାରାୟଣ ମହାପାତ୍ର, ଶ୍ରୀ ବ୍ରଜକିଶୋର ଦାସ, ଅଧ୍ୟାପିକା ଲାବଣ୍ୟ ନାୟକ, ଶ୍ରୀମତି ରମା ଦାଶ, ଅଧ୍ୟାପକ ନାରାୟଣ ମହାନ୍ତି, ଅଧ୍ୟାପକ ମହେଶ୍ୱର ଦାସ, ଅଧ୍ୟାପକ ସୁଧୀର ଚନ୍ଦ୍ର ମହାନ୍ତି, ଅଧ୍ୟାପକ ରବୀନ୍ଦ୍ରନାଥ ସାହୁ, ଅଧ୍ୟାପକ ଶରତ୍ ଚନ୍ଦ୍ର ନାହକ, ଅଧ୍ୟାପକ ଭରତ୍ ଚନ୍ଦ୍ର ପାତ୍ର, ଶ୍ରୀ ମହାପାତ୍ର ଭାସ୍କର ଗନ୍ତାୟତ, ଶ୍ରୀ ହରିଶ୍ଚନ୍ଦ୍ର ବେହେରା, ଶ୍ରୀ ସତ୍ୟନାରାୟଣ ନନ୍ଦ।

—ପ୍ରୀତି ଓ ଶୁଭେଚ୍ଛାର ସହଯୋଗ

# ସୂଚନା

କବିତାଗୁଡ଼ିକ ଅନେକ ଦିନ ତଳର । ଏଥିରୁ ଅଧିକାଂଶ 'ଧରଣୀ' ରବିବାର ସାହିତ୍ୟ ସଂଖ୍ୟାରେ ପ୍ରକାଶ ପାଇଥିଲା । ନିଜ ନାଁ ନଦେଇ 'ପ୍ରଜାପତି' ଛଦ୍ମନାମରେ ମୁଁ ଲେଖୁଥିଲି । କେଇଜଣ ବନ୍ଧୁ ଏଗୁଡ଼ିକର ଏକ ସଂକଳନ ଦେଖିବାକୁ ବିଶେଷ ଆଗ୍ରହ ପ୍ରକାଶ କରିଥିଲେ । କଥାଟା ଗୁମୁରି ଗୁମୁରି ଥିଲା । କାନକୁ କାନ ହୋଇ ହୋଇ ଅଧ୍ୟାପକ ଡ଼: ନାୟକ ସହଯୋଗ ପାଇଁ ଆଗେଇ ଆସିଲେ । ସାହିତ୍ୟ ପ୍ରେମୀ ପ୍ରକାଶକ ଶ୍ରୀଯୁକ୍ତ ଦାଶ ମଧ୍ୟ ଖୁସିରେ 'ହଁ' ଟାଏ ମାରିଦେଲେ । ସେଇଠୁ କାମ ଆରମ୍ଭ ହେଲା ।

ଆଜିକାଲି କବିତାର ବଜାର ଯାହା ପୁଣି ପାଠକ-ମାନଙ୍କର ତା ପ୍ରତି ଯେଉଁ ଶ୍ରଦ୍ଧା ? ସେଥିରେ ମୋ ଭଳି ଜଣେ ଅନାମଧେୟ ଲୋକର ଲେଖା ଛପା ହୋଇ ବାହାରିବ ସେ କଥା ମୋ କଳ୍ପନାରେ ନଥିଲା । ହଉ ହଉ ଛପା ସରିଲା । ଆଜି ଖୁସିର ଦିନ । ବହି ବାହାରୁଛି । ଏତେବେଳେ ଏହା ସହ ଜଡ଼ିତ ଛାପାଖାନା ଭିତରେ ଓ ବାହାରେ ଥିବା ପ୍ରତ୍ୟେକଙ୍କୁ ମୁଁ ଆନନ୍ଦରେ ସ୍ମରଣ କରୁଛି ।

କବିତା କଥା କବିତା କହୁ । ତାର ପାଠକମାନେ ଭଲ ମନ୍ଦ ବିଚାର କରନ୍ତୁ । ମୋର ସଫେଇ ଅନାବଶ୍ୟକ । ପୁରସ୍କାର ଓ ତିରସ୍କାର ସବୁ ମୋର ପ୍ରାପ୍ୟ ।

ଲେଖକ

# କସ୍ତୁରୀ ନଦୀର ଗଂଧ

## ସୂଚୀ

# କବିତା

ହଠାତ୍ ଚକିତ କରି । କବିତାର ଦେଖାହେଲା ।
ଦେଖାହେଲା ବହୁବର୍ଷ ପରେ ।

ଠିକ୍ ବହୁବର୍ଷ ପରେ । ପୁରୁଣା ପ୍ରେମିକାଠାରୁ
ଅକସ୍ମାତ୍ ଚିଠି ଖଣ୍ଡେ ପରି ।

ନଥିଲେ ବାପା ଓ ବୋଉ । ଘର ଭର୍ତ୍ତି
ଅଂଧକାର । ଗୃହଆଙ୍ଗେ ଶୂନ୍ ଶାନ୍ ।

ସିଧା ସିଧା ଭିତରକୁ ଆସି । ଠାଇ ଭଳି
ମୋ ବେକରେ ଓହଳି ।

କହିଲ ମୁଁ ସବୁଜାଣେ । ତମେ ମୋତେ
ଖୋଜୁଅଛ । ଖୋଜୁ ଅନ୍ତ ବହୁବର୍ଷ ଧରି ।

ସ୍ବୃଶବର୍ଷ ତଳେ ଥିଲ ତୁମେ ଖୁବ୍ ଶାନ୍ତ ଓ ସୁଧାର ।
ଆଜ ଖୁବ୍ ପ୍ରଗଲ୍ଭ ତୁମେ । ସି ବର୍ । ଜଙ୍ଗଲ । ଝରଣା ।
ନିଶାରେ ମାତାଲ । ଏବେ ବଅର୍ ଡେଇଁ ହୁଇସ୍କି ଛୁଇଁଲଣି ।
ବହୁନାଶ୍ରୀ ସମ୍ଭୋଗ ଇଚ୍ଛାରେ ଏବେ ତୁମ ମନ ବଳିଲଣି ।

ମୁଁ ତୁମର ପ୍ରେମିକା କବିତା । ଫେରିଛି ମୁଁ
ଗୃଶବର୍ଷ ପରେ ।
ତୁମର ସମସ୍ତ ଯନ୍ତ୍ରଣା । ଏବଂ ନିଃସଙ୍ଗତା ।
ହାହାକାର । କାମନା । ବାସନା ।
ମୋ ଦେହର ସମୁଦ୍ରରେ ଆଜଠାରୁ ହଜଯାଉ ।
ହଜଯାଉ ନବେଦ ଜଡ଼ତା ।
ତୁମେ ମୋର ପ୍ରିୟତମ । ଆଜି କିନ୍ତୁ
ଲୋଡ଼ାନାହିଁ । ଦିଅ । ମୋତେ ଦିଅ ଖାଲି
ଚିରନ୍ତନ ପ୍ରେମିକାର ପ୍ରୀତି ଓ ମମତା ।

ମୋ କବିତା ଅତିକ୍ରାନ୍ତ କୈଶୋରର ।
ଭରନଙ୍କ ଜଳ ଛଳ ଛଳ ।
କଦମ୍ବ ଫୁଟାଏ ମୋ ଦେହେ ଦେହେ ଚୁମ୍ବନର ।
ମୋ ଆକାଶେ ଭରା ମେଘ ।
ବର୍ଷାରେ ଆକୁଳ ।

□□□

# ସକାଳକୁ ଗୋଟିଏ ଚୁମ୍ବନ

ସେଦିନ ମୋ ବିଛଣାରେ ଶାନ୍ତ ଏକ ଢେଉପରି
ସ୍ନିଗ୍ଧରୂପା ସଲ୍ଲଜ ସକାଳ ।

ଦୁଇଟି ଆଖିରେ ଥିଲା ଆଲସ୍ୟ ମେଘର ଭିଡ଼
ଘନ କୃଷ୍ଣ କବରୀରେ ଖସୁ ରାତ୍ରୀ
ଭାଙ୍ଗୁଥିଲା କଡ଼ ।

ନିଶ୍ୱାସରେ ମୃଦୁମନ୍ଦ ଶୀତଳ ସ୍ୱାଦିକ୍ତ ବାୟୁ ।
ଦୁଇ ଓଠ ଟଳିବେ ପଲ୍ଲବେ
ଦୂରାନ୍ତର ନିଭୃତ ମର୍ମର ।

ଆକାଶର କେଉଁଠାରେ ଉଡ଼ୁଥିଲା ଏକାନ୍ତ ଇଚ୍ଛାରେ
ସ୍ୱର୍ଣ୍ଣଲେଖା କେଉଁ ଶଂଖଚିଲ ।

ଶଂଖଚିଲ ଧୀରେ ଧୀରେ ଆକାଶର ସୀମା କାଟି
ପହଞ୍ଚିଲା ସକାଳର ନମଗ୍ର ସୀମାରେ ।
କ୍ରମଶଃ ବଢ଼ିଲା ଶୋଷ । କ୍ରମଶଃ ବଢ଼ିଲା ଜ୍ୱାଳା ।
ଛୁଇଁବାକୁ ସକାଳକୁ ପରମ ଶ୍ରଦ୍ଧାରେ ।
ସୂର୍ଯ୍ୟାଲୋକେ ଝଲମଲ ମନ୍ତ୍ରପୂତ ସକାଳର
ଦେହର ଜଂଗଲ ହସେ
ଅନୁରାଗ କୌଳୁସେ ଜର୍ଜର ।
ସମ୍ପର୍କର ଅନୂଢ଼ା ଡାଳରେ ଫୁଟିଲା ପ୍ରଥମ ଫୁଲ ।
କେତୋଟି ମୁହୂର୍ତ୍ତ ଲାଗି ।
ଗୋଟିଏ ଚୁମ୍ବନ । ଖାଲି ଗୋଟିଏ ଚୁମ୍ବନ ।

କେତୋଟି ମୁହୂର୍ତ୍ତ । କେତୋଟି ମୁହୂର୍ତ୍ତ ଲାଗି ।
ସ୍ତବ୍ଧ ହେଲା ସମୟର ଗତି ।
ସ୍ତବ୍ଧ ହେଲା ପବନର ବେଗ । ଏବଂ
ପକ୍ଷୀର କୂଜନ ।
ସ୍ଥିର ହେଲା ସବୁ ପୃଥିବୀର କଳରୋଳ ।
ଯୌବନର ଜୟଯାତ୍ରା । ଜରାର ମରଣ ।
ଗୋଟିଏ ଚୁମ୍ବନ । ବରଂ ଗୋଟିଏ ଚୁମ୍ବନ ହେଉ ଗୋଟିଏ
ଅଖଣ୍ଡ ଦୀପ । ଜୀବନର ଅଂଧାରି ବେଢାରେ ।
ଗୋଟିଏ ମୁହୂର୍ତ୍ତ । ବରଂ ଗୋଟିଏ ମୁହୂର୍ତ୍ତ ଦେଉ
ବଂଚିବାର ମୁକ୍ତିମୟ ସ୍ୱାଦ ।
ଅହରହ କଲବଲ କାମନାର ସନ୍ତପ୍ତ ବାଲିରେ ।

□□□

# ଗୋଟିଏ ବିଦାୟ

ତମ ଆଖି ଆକାଶରେ ଝାଂଗିପଡ଼େ
ଥମ୍ ଥମ୍ ସକାଳର ମେଘ ।
ନିର୍ବାକ ଓଠର ଫୁଲ ପାଖୁଡ଼ାରେ ମଉଳବା
ସଂଜର ମହକ ।
ଥର ଥର ତମ ହାତ । ଦୁରୁ ଦୁରୁ ଛାତି । ଏବଂ
ମର୍ମର ନିଶ୍ୱାସେ ।
ସେ କେଉଁ ନୀରବ ମଧୁର ଭାଷା ପଢ଼ାହୁଏ
ବିଶ୍ୱାସର ପରମ ଉଲ୍ଲାସେ ।

ବାଟୋଇ ପକ୍ଷୀର ସାଥେ ଅକସ୍ମାତ୍ ଦେଖାଦେଲ !
ସବୁଜ ଶାଖାରେ ତମେ ନାଚୁଥିଲ
ଉନ୍ମନା କପୋତି ।

ହଠାତ୍ ହଜିଲା ନୀଡ । ଉଚ୍ଛଳତା । ଅସ୍ଥିର ଉଦ୍‌ବେଗ
ପ୍ରଥମ ଛୁଆଁରେ ।
ତମ ଦେହେ ଛୁଇଁଗଲା ସକାଳର ସୁରଭିତ ଅବିର ପରାଗ ।
ବଗେ ବଗେ ଚହଟିଲା ଆନନ୍ଦର ଗୁଂଜରଣ । ମମତାର
ବକୁଳ ବାସନା । ଲଜ୍ଜାଖିଆ ଗୀତର ଜୁଆର ।

କେଜାଣି କାହିଁକି ବନେ ଦୁଇଟି ପାଗଳ ପକ୍ଷୀ
ଚେତନାରେ ଚେତନାରେ ଭରିଦେଲେ ପରସ୍ପର
ଦେହର ଉତ୍ତାପ ।
ନୀଳ ଆଖି ଝରଣାରେ କେଉଁପକ୍ଷୀ ପଖାଳିଲା ତନୁ ତାର ।
କେଉଁ ପକ୍ଷୀ ଭୁଲିଗଲା ନିଜର ଠିକଣା ।
ଏ ମାଟିରେ ଏତେ ସୁଖ । ଆଷାଢ଼ରେ ଏତେ ସ୍ନେହ ।
ଏ ବର୍ଷାରେ ଏତେ ମାଦକତା ।
ଆକାଶରେ ଏତେ ଛବି । ବନାନ୍ତରେ ଏତେ ରଂଗ ।
ଏ ବାୟୁରେ ଏତେ ଆକୁଳତା ।

ତା ପରେ ଭାଂଗିଲା ସ୍ୱପ୍ନ । ପୋଛି ଗଲା ରାତି । ଡାକିଲା ସକାଳ ।
କପୋତ ଝାଡ଼ିଲା ଡେଣା । ଉଠିଲା କପୋତୀ । ପ୍ରିୟତାର
ଚୁମ୍ବନରେ ମାଗିଲା ବିନତି ।
ଦୂରବାସୀ ପ୍ରବାସୀ ମୁଁ । ଆଗୋ ମୋର ପ୍ରିୟତମା ।
ବର୍ଷା ଘନ ଆକାଶର ଇନ୍ଦ୍ରଧନୁ ।
ନିବିଡ଼ ସୁଷମା ।
ତମରି ସ୍ମୃତିରେ ଆଜି ମୋ ମନର କୁଂଜବନ ମର୍ମରିତ ।
ପତ୍ରେ ପତ୍ରେ ଜାଗୁଅଛି ପଲ୍ଲବିତ
ସ୍ନେହ ସବୁଜିମା ।

□□□

# ତମ ପାଇଁ ତିନୋଟି କବିତା

(୧)

ପ୍ରଥମ ଦେଖାରେ ତମେ
　　　　ମନେହେଲ କେଉଁ ଶାନ୍ତ ନଈ ।
ଗଭୀର ଜଳରେ ତମ
　　　　ପଡ଼ିଥିଲା କେଉଁ ଦୂର ପଥିକର ମୁଗ୍ଧ ଆଖି ଛାଇ ।
ନୀରବ ନଦୀର ଗୀତ
　　　　ଛୁଇଁଥିଲା ପଥିକର ମନପ୍ରାଣ ସକଳ ଇନ୍ଦ୍ରିୟ ।
ଦେହର ଆଲୋକ ରେଖା
　　　　ଆଙ୍କିଥିଲା ତାକୁ
　　　　ଆଷାଢ଼ ପ୍ରଥମ ମେଘ ଆନନ୍ଦର ଅପୂର୍ବ ସ୍ୱପ୍ନ ।

(୨)

ଛାପରେ ଅନେକ ଥର ଦେଖିଛି ତମକୁ
ଯେତେବେଳେ ସେତେବେଳେ । ସ୍ମୃତିରେ । ସ୍ୱପ୍ନରେ ।

ଅଛୁଆଁ ଆକାଶ ତମେ ଖୋଜିଛି ତମକୁ
ଆଲୁଅରେ । ଅଂଧାରରେ । ବର୍ଷା, ଶୀତ, ଗ୍ରୀଷ୍ମର ସନ୍ଧରେ ।

କାହିଁକି ଜାଣେନା କହୁ । ଭାବୁଛି ମୁଁ ତମ କଥା
ବାରମ୍ବାର । ଅସରନ୍ତି ସୂତାଖିଅ ପରି ।

ଅବାଟେ ବଣରେ ପଶି ଡାକୁଛି ତମକୁ
ଦୂରର ବଇଁଶିଆଳ ଗୀତରେ ବହୁରି ।

(୩)

ହଠାତ୍ ସେଦିନ ଆକାଶ ମମତା ଭୁଲି
ଜଳଭରା ମେଘ ନଇଁଲା ମାଟିର ବୁକେ ।

ପହିଲି ବରଷା ଛୁଇଁଲା ଧରଣୀ ଧୂଳି
ନୂଆ ରସରାଗ ବହିଲା ଉଚ୍ଛଳା ସୁଖେ ।

ଅଥବା ଫଗୁଣ ଅଦୂରେ ରହିଲା ଠିଆ
ଆଖିରୁ ଝରିଲା ନୀଳ ଝରଣାର ମଦ ।

ଓଠରେ ଫୁଟିଲା ଉଷ୍ମ ଆଳାପ କଳି
ଗଂଧ ଆମୋଦେ ଥରିଲା ରକ୍ତ ହ୍ରଦ ।

ଗୋଟିଏ ଦିନର ନବଢ଼ ଜୀବନ ମାପୁ
ମନର ଫରୁଆ କାହିଁକି ସାଇତି ରଖେ ?

ହଜିଲା ଅତୀତ ପାଉଁଶ ତଳର ନିଆଁ
ଅବୁଝା ସମସ୍ତ କାହିଁକି ଉଖାରି ଦେଖେ ?

□ □ □

# ସ୍ୱପ୍ନରେ ତମକୁ ବାରମ୍ବାର

ସ୍ୱପ୍ନରେ ତମକୁ ବାରମ୍ବାର ପାଇଛି ଓ ହଜାଇଛି
ବାରମ୍ବାର ସ୍ୱପ୍ନରେ ତମକୁ ।

କେତେବେଳେ ଜ୍ୟୋତ୍ସ୍ନା ଭିଜା ଆକାଶରୁ ତମେ ଆସ ।
ପାଦର ପାଉଁଜ ତମ ରୁମ୍‌ଝୁମ୍

ରୁମ୍ ଝୁମ୍ ରୁମ୍ ଝୁମ୍ କ୍ରମଶଃ ନିକଟ ହୁଏ ।
କେତେବେଳେ ତମେ ଆସ
ନିଃଶବ୍ଦ ପାଦରେ ।

କେତେବେଳେ ବିଛଣାରେ ବିବସ୍ତ୍ରା କାନ୍ତଶ୍ରୀ ତମେ । ତମ ଗାଢ଼
ଆଲିଙ୍ଗନେ ଗଳି ହୁଏ ଆଞ୍ଜୁଳାଏ ଜଳ ।
କେଉଁ ତୃଷାର୍ତ୍ତ ଓଠରେ ।

କେତେବେଳେ ତମ ସହ ଶରତ ନିର୍ଜନ ନଦୀ କୂଳେ ଅକସ୍ମାତ୍
ଏକାନ୍ତରେ ଦେଖା ।
ତମ ସହ ଦେଖାହୁଏ କେତେବେଳେ ବର୍ଷାଝରା
ରାତ୍ରୀର ତୋରଣେ ।

କେବେ ଅଭିମାନବଶ ତମେ ଆସ ସନ୍ଦେହର କୁହୁଡ଼ିରେ
ପହଁରି ପହଁରି ଥରି ଥରି ମିଛ ପବନରେ ।

କେବେ ଆସ ପ୍ରଗଲ୍‌ଭିଣୀ ଅସରନ୍ତି କଥାର ଝୁଙ୍କୁଡ଼ା ଧରି
ସ୍ଥିର କରି ନିରଳସ ରାତିର ପଲକ ।

କେବେ ତମେ ଲଜ୍ଜାନମ୍ରା ଧର୍ମାସକ୍ତ ଦେହର ଗଂଧରେ
ଦିଅ ଉପହାର କୋଣାର୍କର କାରୁକାର୍ଯ୍ୟ ।
ଅଜନ୍ତାର ଐଶ୍ୱର୍ଯ୍ୟ ସମ୍ଭାର ।

କେବେ ତମେ ସୈରିଣୀର ଉଚ୍ଛୃଙ୍ଖଳ ହାହାକାର ଘେନି ଆସ ।
ଝଂଗିରୁକି ଚୁରମାର କରିବାକୁ
ପୌରୁଷର ତୁଙ୍ଗ ଅହଂକାର ।

ଜୀବନରେ କେତେ ସ୍ମୃତି କେତେ କଷ୍ଟ କେତେ ଦୁଃଖ ।
ତମ ସ୍ୱପ୍ନ ଧୋଇଦିଏ ସବୁ ଦାଗ ।
ସବୁ ପ୍ରବଞ୍ଚନା ।
ବର୍ଷାସ୍ନାତ ଦ୍ୱିପ୍ରହର ପରି ।

ଧୂଳି ଧୂଆଁ ପୃଥିବୀର ଯନ୍ତ୍ରଣାରେ ବିଡ଼ମ୍ବିତ ମୋ ସମସ୍ତ
ସରିଯାଏ ତମରି ସ୍ୱପ୍ନରେ
କେଉଁ ଆନନ୍ଦରେ ଗମୁରି ଗୁମୁରି ।

# ଏପ୍ରିଲ୍-ବରଷା

ଏପ୍ରିଲ୍-ବରଷା ନାଚେ ମୁକୁଳାଇ ମେଘର କବରୀ ।
ଝଞ୍ଜର ଘଣାତ ଉଡ଼େ ଝର ଝର ଝର ଝର ଝରି ପଡ଼େ
ଜଳର ଶାପୁଷ୍ପ ।

ଏପ୍ରିଲ୍-ବରଷା ଦିନେ ଆସିଥିଲ । ଭିଜା ଭିଜା ଦେହ ଗଂଧ ମାଖି ।
ନିବୁଜ କୋଠରୀ ଥିଲ । ସୀତାରରେ ନୂଆବେଗ । ପ୍ରଥମ ଆଳାପ ।
ସେଦିନ ରକ୍ତର ନଦୀ । ଢେଇଁବ ଢେଇଁବ କୂଳ । ଆକୁଳ । ବ୍ୟାକୁଳ ।
ମୋ ଇଚ୍ଛାର ବଗିଚ୍ଚରେ ଫୁଟିଥିଲା ଆନନ୍ଦର ଧବଳ ଟଗର ।

ପ୍ରଥମ ଚୁମ୍ବନ ସଙ୍ଗେ ପଡ଼ିଚପୂ କଲ୍ୱଇଲା ଏପ୍ରିଲ-ବରଷା ।
ହଠାତ୍ ଝରକା ଖୋଲି ମୋ ଗର୍ଣ୍ଣିଶି ଭିତରକୁ ଆସିଥିଲା
ସକାଳର ଖବର ଲହଡ଼ି ।

ବାହାରେ ପକ୍ଷୀର ଡାକ । ଫୁଲମାନେ ହସ ହସ ।
ପତ୍ରଙ୍କର ମଧୁର ମର୍ମର ।

ବଉଳ ଫୁଲର ବାସ୍ନା ମାଡ଼ିଥିଲା ପବନରେ । ବନ୍ଧୁ ବନ୍ଧୁ
ଚେତନାରେ ମିଶିଥିଲା ସଂଗୀତର
ମୂର୍ଚ୍ଛିତ ରାଗିଣୀ ।

ଏପ୍ରିଲ-ବରଷା ପୁଣି ମୋ ଛାତିରେ ଅଜାଡ଼ିଲା
ପୁଷ୍ପବତୀ ଦେହର ମମତା ।

ସେ ଦିନ ଜାଣିଲି ମୁହିଁ ସତେ କେତେ ଆପଣାର
ବର୍ଣ୍ଣମୟୀ । ଗଂଧମୟୀ । ସ୍ୱାଦମୟୀ ।
ସୁନ୍ଦରୀ ପୃଥିବୀ ।

ଓଠର ଅଝଟ ଶୋଷ । ଦେହମୟ ଆତୁରତା ।
ଆଖି ଆଉ ନାକର ଉତ୍କଣ୍ଠା ।

ନବୀନ ନଈର ଲୁଠେ ଅଭିଭୂତ ଉଲ୍ଲାସରେ ହଜିଗଲେ ।
ଗୃହଆଡ଼େ ଘେରିଥିଲା ମୋହମୟ
ଜୀବନ ସ୍ନିଗ୍ଧତା ।

□□□

# ପ୍ରିୟତମା

ପ୍ରିୟତମା ! ଆହୁରି ନିବଡ଼ ହୁଅ । ସ୍ୱର୍ଗ ଛୁଇଁ ମାଟି । ଏବଂ
ଉଚ୍ଛଳିତ ରକ୍ତନଦୀ ହଜିଯାଉ ସମୁଦ୍ର ଦେହରେ ।

ଆଷାଢ଼ ପ୍ରଥମ ବର୍ଷା ଋତୁମତୀ ସହରରେ ଆଣୁ
ସହସ୍ର ଚୁମ୍ବନ । ଏବଂ
ଉଦ୍‌ବେଳିତ ସମୟର ଅରଣ୍ୟରେ ନାଚୁ ନଗ୍ନ ପାଗଳ ପବନ ।

ପ୍ରିୟତମା ! ତମେ ମୋର ସ୍ୱପ୍ନ ଭରା ଝିଲ୍ ମିଲ୍ ରାତି ।
ଯୁଦ୍ଧର ଆକାଶେ ତୁମେ ଧ୍ୱଂସର ଧୂମକେତୁ ।

ମିଶରର ନୀଳନଦୀ ସ୍ରୋତ ପରେ ତମେ କେବେ ହୁଅ [illegible]
ତମେ ପୁଣି ବୈଶାଳୀର ରୂପାମ୍ବରୀ ଦିଗ୍‌ବଳୟେ
[illegible] ।

ପ୍ରିୟତମା ! ଇତିହାସ ପାଇନାହିଁ ଖୋଜି ତମ ସୀମା ।
ପ୍ରତ୍ୟେକ କବିର ପ୍ରିୟ କନକ ମନ୍ଦିରେ ତୁମେ ।
ତପସ୍ୱୀର ତପଃଭଙ୍ଗା ଦେବୀ ।

ବେଦଆନ୍ଦୋଳା ମଣିଷର ତମେ ହିଁ ପ୍ରଥମ ପ୍ରଜ୍ଞା । ଆଲୋକିତ
ଆଦି ଉଚ୍ଚାରଣ ।

ରାଜାର ଗର୍ବିତ ଶିର । ସାମ୍ରାଜ୍ୟ ଓ ଐଶ୍ୱର୍ଯ୍ୟର ତମେ ଇତିହାସ
ଏବଂ ତମେ ପୁଣି କଳଂକର
ନିତ୍ୟ ନିମନ୍ତ୍ରଣ ।

ପ୍ରିୟତମା ! ତମ ଦେହେ ଏତେ ସ୍ୱାଦୁ । ଏତେ ମଧୁ ।
ଏତେ ଗଂଧ ! ଏତେ ଅଂଧ କାମନାର ଢେଉ ।

ତୁମ କେଶ । ଆଖି । ଓଠ । ଗ୍ରୀବା । ସ୍ତନ । ନାଭି । ଜଂଘ ।
ନାକ । ନଖ । ପ୍ରତି ଅଣୁ ।
ପ୍ରତି ପରମାଣୁ ।

ଉତ୍ତାପ ବାସ୍ନାରେ ଭରେ ଆମ୍ରବନ ପୌରୁଷର ଉଲ୍ଲସିତ
ହାଲଘା ବସନ୍ତ ।

ମନର ମମତା ତୁଆଁ ତମ ନିଶ୍ୱାସରେ ପୁଣି
ଆମୋଦିତ ଦିଗନ୍ତ ଦିଗନ୍ତ ।

○ ○ ○

# ତମ ଆଖି

ତମ ଆଖି ଅରଣ୍ୟରେ ହଜିଯାଏ ସମୁଦ୍ରର ଶୋଷ ।
ଦିଗଭ୍ରଷ୍ଟ ନାବିକର ଆକାଶରେ ଜଳୁଥାଏ ତୁମ ଆଖି ନୀଳ
ଧ୍ରୁବତାରା ।

ତମ ଆଖି ଉପତ୍ୟକା ଉଚ୍ଚାଟ ମାୟାରେ ଶାନ୍ତହୁଏ ଗତିବାନ୍ ନଦୀ ।
ରାତିର ରହସ୍ୟଠାରୁ ଆହୁରି ନିବିଡ଼ ହୁଏ ତମ ଆଖି
ମୁଗ୍ଧ କାବ୍ୟଗାର ।

ଅନେକ ନିଃସଙ୍ଗ ରାତି
ବନ୍ଦୀ ଆଣେ ତମ ସ୍ମୃତି
ତମ ନୀଳ ଆଖିର ବାରତା ।
ଅନିଦ୍ର ମୁଁ ଖୋଜିବୁଲେ
ତୁମରି ଆଖିର ସ୍ନେହ
ନୀଳକଇଁ ନୀରବ ସରାଗ ।

ଯେତେବେଳେ ମନେହୁଏ

ଦୃଶ୍ୟମୟ ପୃଥିବୀରେ

ସବୁ ମିଛ ସବୁ ସ୍ୱାଦହୀନ ।

କେବଳ ଗୋଟିଏ ଦୃଶ୍ୟ

ଅତି ପ୍ରିୟ ଅତି ଆପଣାର

ସ୍ନିଗ୍ଧ ନୀଳ ଆଖିର ଆଶ୍ଳେଷ ।

ଅନେକ ନିଃସଙ୍ଗ ଦିନ

ବ୍ୟର୍ଥତାରେ ଜଳିଯାଏ

ଖୋଜି ତମ ଆଖିର ଠିକଣା ।

ବଡ଼ ନିଃସହାୟ ଲାଗେ

ଏତେ ସବୁ ଆଡ଼ମ୍ବର

ଏତେସବୁ ଜୟ ଜୟକାର ।

ପାପ ପୁଣ୍ୟ ଭୁଲିଯାଏ

ଜୀବନର ଇତିହାସ

ଭୁଲିଯାଏ ଗୌରବ ଗରିମା ।

ସକଳ ଐଶ୍ୱର୍ଯ୍ୟ ମଧ୍ୟେ

ଦପ୍ ଦପ୍ ଜଳିଉଠେ

ଦୁଇ ନୀଳ ଆଖିର ମହିମା ।



# ତମ ସ୍ତନ

ଅନେକ ସ୍ୱପ୍ନର ସ୍ୱପ୍ନ ବିଳସିତ ତମ ଦୁଇ ଅନାବୃତ ନିଟୋଳ ସ୍ତନରେ ।
ଉର୍ବର ଭୂମିରେ ଅବା ହେମନ୍ତର କ୍ଷେତଭରା ରୂପଶାଳୀ ପାଚିଲା ଫସଲ ।
କିମ୍ବା କେଉଁ ବୃକ୍ଷ ଡାଳେ ବିଶ୍ରାମିତ ଦୁଇଗୋଟି ଶାନ୍ତ ମୌନ
ହଳଦିଆ ବସନ୍ତ ।
ଅଥବା ଓଏସିସ କେଉଁ ମରୁଭୂମି ପଥକ୍ଲାନ୍ତ ପଥିକର ଆଶ୍ଚର୍ଯ୍ୟ ଆଖିରେ ।

ନିଜର କର୍ତ୍ତବ୍ୟ ଭୁଲି ଆକାଶ ଓହ୍ଲାଇ ଆସେ ଦେବାକୁ ଚୁମ୍ବନ
ତମ ସ୍ତନ ବିପୁଳ ମାୟାରେ ।
ଜହ୍ନରାତି ଜାଗି ରହେ ନିଷ୍ପଲକ ବିନିଦ୍ର ଆଖିରେ ଦେଖିବାକୁ
ବିଚ୍ଛୁରିତ ସୌନ୍ଦର୍ଯ୍ୟର ଲଳିତ ଉତ୍ସବ ।

ବର୍ଷା ଘନ ଅଂଧକାର ମାଗେ ଖାଲି ଫର୍ଦ୍ଦିତର ନିବଡ଼ ଆଶ୍ଳେଷ
ପିଇବାକୁ ମଧୁର ଉତ୍ତାପ ।
ଶୀତ ଆସେ ଥରି ଥରି ପଉଷର କୁହୁଡ଼ିରେ ପହଁରି ପହଁରି
କମ୍ପିତ ଉଲ୍ଲାସେ
ଛୁଇଁବାକୁ ସ୍ତନବୃନ୍ତ ପ୍ରୀତି ଅନୁରାଗ ।

ଅନେକ ପ୍ରତିଜ୍ଞା ମୋର ରାଗ କ୍ରୋଧ ଅଭିମାନ
ସବୁଯାଏ ଭସ୍ମ ହୋଇ
ତମ ସ୍ତନ ଉତ୍ତପ୍ତ ସ୍ନେହରେ ।
କ୍ଷୁଧା ତୃଷା ଜରା ମୃତ୍ୟୁ ଭୁଲିଯାଏ ମୁଁ ସେତେବେଳେ
ନିଜର କଣ୍ଠିରୁ । ଗଗନେ ପବନେ ଲାଗେ
ଯୌବନର ଅମୃତ ଆସ୍ୱାଦ ।

ଋଷ୍ୟଶୃଙ୍ଗ ଅହମିକା ଭାଂଗି ପଡ଼େ । ଭାଂଗିପଡ଼େ ଆପୋଲୋର
ବୀର୍ଯ୍ୟ ପରାକ୍ରମ ।
ପୁରାଣର ସହସ୍ର ଅଧ୍ୟାୟ ଲେଖେ
ତମ ସ୍ତନ ଜୟଗାଥା ।
କୋଣାର୍କ ବା ଖଜୁରାହୋ, ଅଜନ୍ତାର ଶିଳାରେ ଶିଳାରେ କମ୍ବା
କାଳିଦାସ କବିତାରେ କେତେ ସ୍ତୁତି ।
ବନ୍ଦନାର ବିପୁଳ ବାରତା ।

ଅନେକ ନିର୍ଜନ ରାତି ବେଦନାର୍ଦ୍ର ହାହାକାର
ନିମିଷକେ ଶୋଷିନିଏ ତମ ସ୍ତନ
କୋମଳ ସୋହାଗ ।
ଫଗବାର ମଳି ନିଆଁ ଜାଳିଦିଏ ଦେହ ମନ ପ୍ରାଣ
ନୂତନ ପ୍ରଭାତ ଗାଏ
ଜୀବନର ନବତମ ରାଗ ।

□□□

# ତମ କେଶ

ପ୍ରିୟତମା ! କେଉଁପରି ଏତେ ସ୍ନିଗ୍ଧ ଗଂଧ ଝରେ
ତମ କେଶ ନୀଳ ଅଂଧକାରେ ।

ଜହ୍ନ ଯାଏ ବାଟ ଭୁଲି । ତାରାରେ ତାରାରେ ଜାଗେ
ମୃଦୁ ମନ୍ଦ ମୁଗ୍ଧ ଶିହରଣ ।

ମାଟିରେ ମର୍ମର ସ୍ନେହ । ପବନରେ ଆତୁରତା ।
ଶିଶିରରେ ଭିଜା ସ୍ୱପ୍ନ ଝରେ ।

ରକ୍ତରେ ଆକୁଳ ତୃଷା । କାମନାରେ ଉତ୍ତାନଙ୍କ ।
ଜୀବନରେ ଅଂଧ ଷଡ଼ଥି ଜଳେ ।

ପ୍ରିୟତମା ! ତମ କେଶ ଐଶ୍ୱର୍ଯ୍ୟର ଉପକୂଳେ
ସେଦିନ ମୁଁ କଳିଙ୍ଗର ସୌଦାଗର
ରୂପ ଆଉ ପ୍ରେମର ବଣିକ ।

ବାନ୍ଧିଲି ଜାହାଜ ମୋର । ବଣିଜର ପଡ଼ିଲା ମେଳକ ।
ଗନ୍ଧରେ ଫୁଲିଲା ଗୁଚ୍ଛ ।
ଠୁଳ ହେଲା ଅକଳନ୍ତି ଧନର ସୌଭାଗ୍ୟ ।

ଦିନେ ଜଳଦସ୍ୟୁ ଦଳ ଅଗୁନକ ଚଢ଼ାଉରେ ମୋ ଜାହାଜ
କାହିଁଗଲା ?ମୁଁ କେଉଁଠି ପହଞ୍ଚିଲି ? କେଉଁଠାରେ
ହଜାଇଲି କେଶବଣ୍ଟ ପ୍ରୀତିର ମୂଲକ ?

କିଛି ବୁଝି ହୁଏନାହିଁ । ଧନ । ଜନ । ସୌଭାଗ୍ୟ । ଦୁର୍ଭାଗ୍ୟ ।
କେବେ ଆସେ । କେବେ ଯାଏ । ବଚନ୍ଦ ଏ
ଦୁନିଆର ହିସାବ ନିକାଶ ।

ପ୍ରିୟତମା ! ମନେପଡ଼େ । ତମ କେଶ ଆଶ୍ଳେଷରେ
ଘେରିଆସେ ରୂପବନ୍ତୀ ଗଣିକାର ନିଶା ।

ଆଜି ହାୟ ! ତୃଷାତୁର ସମୟର ଚେତନାରେ ଚରିଯାଏ
ଚଇତାଳି ତନ୍ମୟ ପିପାସା *।

□□□

# ବିରହର ଦିନସବୁ

ବିରହର ଦିନ ସବୁ କୋଉଠି ବୁଢ଼ୀଟି ପରି ବାଟ ଚଲେ
କୁନ୍ଥେଇ କୁନ୍ଥେଇ ।

ଅସହାୟ ନିର୍ଜନତା ଅଜସ୍ର ମୂଷାଙ୍କ ପରି କୋରି କୋରି
ଖାଇଯାଏ ହାଡ଼ରୁ ମାଉଁସ ।

ନିଚ୍ଛଟିଆ ଜହ୍ନରାତି କମଳା କୋଷାର ସିଠା ପରି ଲାଗେ
ବିଷଣ୍ଣ ବିବର୍ଣ୍ଣ ।

ଅଝଟ ଅଂଧାର ସବୁ କେଉଁ କଏଦୀର ଛାତିରେ ପଥର ପରି
ଢୋଇଯାନ୍ତି ରାତିରେ ସବାର ।

ବରଷର ଦିନ ସବୁ ଉତ୍କଣ୍ଠ ଖରାର ଋତୁ
ପୋଡ଼ ଫାଡ଼ ଭାଂଗିଦିଏ ଚଇତର ହାଟ ।

ସ୍ମୃତି ସବୁ ଝଣ୍ଡେ ଝଣ୍ଡେ ଶରତର ମେଘ ଭଳି
ବୁଲୁଥାନ୍ତି ହତାଶ ପଥିକ ।

ଆକାଶରେ ନାହିଁ ମୟୂ । ମୃତ୍ତିକାରେ ନାହିଁ ଶ୍ରଦ୍ଧା ।
ପବନରେ ନାହିଁ ମିଠା ସ୍ନେହ ।

ଭୟଙ୍କର ନିଷ୍ଠୁରତା । ଏମାନେ କି ସମବେତ
ଶରବଦ୍ଧ କରିବାକୁ ସୁକୁମାର
ଅଭିମନ୍ୟୁ ଚତୁର୍ପାର୍ଶ୍ୱେ
ସପ୍ତରଥୀ ବ୍ୟୂହ ।

ବରଷର ଦିନସବୁ ଅର୍ଖିତ ପିଲାଙ୍କ ପରି
ଲୁଙ୍ଗୁଳା ଫୁଙ୍ଗୁଳା ହୋଇ ଧୂଳିରେ ଧୂସର ।

ଶୂନ୍ୟତାର ମୁହାଁଣରେ ଚୁପ୍‌ଚୁପ୍ ହସୁଥାନ୍ତି
ସାଗରର ସହସ୍ର ବୋଇତ ।

ମନର ଫୁଲେଇ ନଈ ମରିଯାଏ ଏକାନ୍ତରେ
ସାହାରାର ଅସରନ୍ତି ବାଲିରେ ଗାଧୋଇ ।

ଦିଗେ ଦିଗେ ବାଜୁଥାଏ ନଟୂଙ୍କୁପ ସମସ୍ୱର
କରୁଣ ସାନାଇ ।

□□□

# ସହର ଦେଖିଚ ବଂଧୁ !

ସହର ଦେଖିଚ ବଂଧୁ ! ଦେଖିଚ ସହର
ନିଝୁମ ରାତିରେ କେବେ ଜ୍ୟୋତ୍ସ୍ନାଧୂଆ ରୂପଗର୍ବୀ ଉତ୍କଣ୍ଠ ସହର ।

ଅବାକ୍ ଆଖିରେ ନୂଏଁ ବସ୍ତୁପୁର କୋଳାହଳ ମୋହମୟ ସ୍ୱପ୍ନ ପରି
ସହରର ଶାନ୍ତ ସ୍ନିଗ୍ଧ ଦେହ ।

ଝର ଝର ଝାଉଁବଣ ସହରର ମୁକ୍ତକେଶ ଦୋଳାଏ ପବନ ।
ନୀଳ ନଦୀ ଜଳ ଛଳ ଛଳ — ଆଖିର ଭୂଗୋଳ ।
ସହରର କାଖତଳେ ଯୋନି ମୂଳେ ଜମିଅଛି
ଖଣ୍ଡେ ଖଣ୍ଡେ ଗୁଳ୍ମାଘନ ନିବିଡ଼ ଅଂଧାର ।
ମନ୍ଦିର ଶୀର୍ଷରେ ଭାସେ ଇଷତ୍ ଶ୍ୟାମଳ ମେଘ
ସହରର ଉନ୍ମତ୍ତ ସ୍ତନାଗ୍ର ।
ଆଃ କି ସୁନ୍ଦର ।
ସହର ଦେଖିଚ ବଂଧୁ ! ଦେଖିଚ ସହର ।
ନିଝୁମ ରାତିରେ କେବେ ଜ୍ୟୋତ୍ସ୍ନାଧୂଆ ରୂପଗର୍ବୀ ଉତ୍କଣ୍ଠ ସହର ।

ଲମ୍ବି ଯାଏ ରାଜପଥ ଜ୍ୟୋତ୍ସ୍ନାରେ ପିଚ୍ଛିଳ ।
ସହରର ଜଂଘ ଦିଶେ ଉର୍ବର ଉଜ୍ଜ୍ୱଳ ।
ବାସ୍ନାଭିଜା ବାୟୁ ଆସି ରକ୍ତକୋଷ କରେ ଉତ୍ତେଜିତ ।
ସହରର ନିଃଶ୍ୱାସରେ ଏତେ ଯାଦୁ
ଏତେ ପୁଣି ଫଗୁଣ ଚଇତ ।
ବ୍ରୀଡ଼ାରେ ବଙ୍କିତ ଦେହ ଆଲୋଳିତ ପ୍ରୀତିରେ ଆତୁର ।

ଅପାଶୋରା ଲଳିତା ସହର ।
ଆଃ କି ସୁନ୍ଦର ।
ସହର ଦେଖିତ ବନ୍ଧୁ ! ଦେଖିତ ସହର ।
ନକ୍ଷତ୍ର ରାତ୍ରିରେ କେବେ ଜ୍ୟୋତ୍ସ୍ନାଧୁଆ ରୂପଗର୍ବୀ ଉତ୍କଣ୍ଠ ସହର ।

ବେଳେ ବେଳେ ଇଚ୍ଛାହୁଏ
ମୁଁ କେଉଁ ପତଳ ଝଡ଼ ହୋଇ ନାଚିଯିବି ସହର ଗୁଡ଼ରେ ।
ବର୍ଷା ର ସହସ୍ର ବିନ୍ଦୁ ପାଲଟିବ ସହସ୍ର ଚୁମ୍ବନ
ଉଚ୍ଛୁଳିବ ନଈ ନାଳ ।
ଭାଂଗିଚୁରି ପଡ଼ୁଥିବ ଯେତେସବୁ ସ୍ପର୍ଦ୍ଧାମୟ ଅହଂକାର ।
କାମନାର ଉଦ୍ଧତ ମିନାର ।

ବେଳେ ବେଳେ ଇଚ୍ଛାହୁଏ
ପଦ୍ମତୋଳା ଗାଇ ଗାଇ ବୁଲୁଥିବି ସହରର ଗଳିରେ ଗଳିରେ ।
ଗୀତର ଲଳିତ ଛନ୍ଦେ ନାଚୁଥିବେ ସ୍ନାୟୁର ନାଗୁଣୀ ।
ମୁଗ୍ଧ ଆବେଶେ ।
ପରମ ଉଲ୍ଲାସେ ।

ବେଳେ ବେଳେ ଇଚ୍ଛାହୁଏ
ଏଇମିତି ଶୋଇଥାଉ ସ୍ୱପ୍ନାଦର୍ଶୀ ଚନ୍ଦ୍ରର ନଦ୍ୱାରେ ।
ମୋ ଆଖିର ବନ୍ଦରରେ ଭାସୁଥାଏ କଳିଙ୍ଗର ଗଜଦନ୍ତୀ ସୌଖିନ ବୋଇତ ।
ନପାହୁ ଏ ମାୟାବିନୀ କୁହୁକିନୀ ରାତି
ଆଗୋ ରୂପବନ୍ତ !
ମୋ ସହର
ଅନେକ ଇଚ୍ଛାର ।
ସହର ଦେଖିତ ବନ୍ଧୁ ! ଦେଖିତ ସହର
ନକ୍ଷତ୍ର ରାତିରେ କେବେ ଜ୍ୟୋତ୍ସ୍ନାଧୁଆ ରୂପଗର୍ବୀ ଉତ୍କଣ୍ଠ ସହର ।

○ ○ ○

# ତମକୁ ଛୁଇଁଲେ

ଦିନର ଆଲୁଏ ରାତିର ଅଂଧକାରେ
ତମକୁ ଛୁଇଁଛି, ଛୁଇଁଛି ଅନେକ ବାର ।

ଅନେକ ପାଇଛି, ପାଇଛି ଅନେକ କିଛି
ତଥାପି ରହିଛି ପାଇବା କାମନା ମୋର ।

ତମକୁ ଛୁଇଁଲେ ନଈରେ ଜୁଆର ଆସେ
ଫଗୁଣ ରାତିର ମରମେ ଚମକ ଲାଗେ ।

ଅଜଣା ଫୁଲର ମହକ ପବନେ ଭାସେ
ସୁଖର ବରଷା ଉଚ୍ଛୁରେ ଆକାଶ ଭାଗେ ।

ତମକୁ ଛୁଇଁଲେ ଧୂଳିରେ ସପନ ଲୋଟେ
ଦେହର ପୋଥିରୁ ହୁଗୁଳେ ଲାଜର ଡୋରି ।

ସୁଦୂର ବାଟୋଇ ଥମକି ବାଟରେ ରହେ
ଆଖିରେ ତାହାର ସପନ ଆସଇ ଘାରି ।

ତମକୁ ଛୁଇଁଲେ ମନର ରୋଷଣି ଜଳେ
ହାଡ଼ର ଶାଖାରେ ଫୁଟଇ ଲଳିତ କଳା ।

ଜୀବନ ବୀଣାରେ ମୁଗ୍‌ଧ ଆଳାପ ଉଠେ
ରକ୍ତ ସହର ନମିଷେ ଉଠଇ ଜଳି ।

# ଖରାବେଳ

ଖାଁ ଖାଁ ଖରାବେଳ
ନିଗ୍ଛୁଟିଆ ତମ ପଡ଼ାଘର ।
ଛପି ଛପି କଏ ଆସେ
ଛୁଇଁବାକୁ ତମ ଫୁଲବନ ।
ଅବୁଝା ପବନ ।

ଯେତେ ତମ ନାଁ ନାଁ
ଅମାନିଆ ଜମା ମାନେ ନାହିଁ ।
ସବୁ ଲୁଟି ନେଇଯାଏ
ଚୁପ୍ ଚୁପ୍ ଶୋଇଥାଏ
ଗାଆଁ ବିଲ ବଣ ମଲ୍ଲନଙ୍କ ।
ଆକାଶରେ ନିଆଁ ହୋଳି
ଖେଳୁଥାଏ ଖରାବେଳ
ଜଳୁଥାଏ ବିକଳ ପୃଥିବୀ ।
ନିପୀଡ଼ିତ ପୁଲକରେ
ହସୁଥାଏ ଫୁଲବନ
ଉନ୍ମାଦ ପବନ ଗାଉଥାଏ
ପ୍ରୀତିର ପୂରବୀ ।

□ □ □

# ଶୀତରାତି

ଶୀତରାତି । ଅଂଧାରର ସୁଡ଼ଙ୍ଗରେ ତମେ ଆସ ।
ତମେ ଆସ ମମତାର ଆତୁର ଉଲ୍ଲାସ ଲଗ୍ନ ।
ତମେ ଆସ ଅସରାଏ ମେଘର ସୌଭାଗ୍ୟ
ତୃଷାର୍ତ୍ତ ମାଟିର ।
ତମେ ଆସ । ତମ ଆଖି ସବୁଜ କ୍ଷେତରେ
ଶଂକିତ ମେଘର ଛାଇ । ତମେ ଆସ ।
ସର୍ବାଙ୍ଗରେ ଠେକୁଆର ହସ୍ତ ଚପଳତା ।

ମୁଁ ଜାଣେନା କେତେବେଳେ ଆମର ସତର୍କ ସତ୍ତା ମିଶିଯାଏ
ପରସ୍ପର ଆକାଂକ୍ଷାର ଦିଗ୍‌ବଳୟ ସ୍ୱପ୍ନର ସୀମାରେ ।
ମୁଁ ଜାଣେନା କେତେବେଳେ ଆମର ନିର୍ଲଜ୍ଜ ସଜ୍ଞା ହଜିଯାଏ
ପରସ୍ପର ଏକାକାର ରକ୍ତର ଗଂଧରେ ।

ଶୀତରାତି । ତମ ଦେହ ଜଳନ୍ତା ଉହ୍ମଇ ପାଶେ
ନଆଁ ପୁଏଁ କାମନାର ପୁଷ୍ଟି ।
ବେଳ ଜାଣି । କାଳ ଜାଣି । ତମେ ପୁଣି ଫେରିଯାଅ ।
ବିଛଣାରେ ପଡ଼ିରହେ ଇତସ୍ତତ ମଉଳା ଫୁଲର ସ୍ମୃତି ।
ଛାଡ଼ିଗଲା ଜୁଆରର ଅନୁରାଗ ରାଶି ।

□ □ □

# ଚିଠି

ବେଳେ ବେଳେ ବ୍ୟସ୍ତଲାଗେ
କାହିଁକି ଆସେନା ଚିଠି
ବେଳେ ବେଳେ ଖୁବ୍ ବ୍ୟସ୍ତ ଲାଗେ ।

କେଉଁଠି ଲାଗେନା ମନ
ଦିନଯାଏ ରାତିଯାଏ
ଡାକବାଲା ବାଟ ଚାହିଁ ଚାହିଁ ।

ଆକାଶରେ ଜମି ଆସେ
ଅନେକ କ୍ଳାନ୍ତିର ମେଘ
ପବନରେ ଉଡ଼ାଏ ଅଳସ ।

ଏକ୍ଷଣେ ଅସ୍ୱସ୍ତି ଲାଗେ
ଯେତେସବୁ ଆୟୋଜନ
କିଏ ବୁଝେ ପୃଥିବୀର ଶୋଷ ।

ସବୁ ମିଛ ପ୍ରତିଶ୍ରୁତି
ସବୁ ମିଛ ଗେହ୍ଲାପଣ
ସବୁମିଛ, ଭଣ୍ଡି ବାର ଖୋଇ ।

ବାରମ୍ବାର ଅଭିଯୋଗ
ବାରମ୍ବାର ଅନୁନୟ
ବେଳଜାଣି ଚିଠି ଆସେ ନାହିଁ ।

ତମେ ଏତେ ସହଜରେ
କିପରି ଯେ ଭୁଲିଯାଅ
ଏ ନିଃସଙ୍ଗ ଦ୍ୱୀପର ଖବର ।

ତମେ ଏତେ·ସହଜରେ
କିପରି ଯେ ହଜିଯାଅ
(ଜଳୁଥିବା ନୀଳ ତାରା)
ଥାଉଁ ଥାଉଁ ରାତିର ଅଂଧାର ।

□ □

# ଗୋଟିଏ ମାଗୁଣି ମୋର

ଗୋଟିଏ ମାଗୁଣି ମୋର

ଅତି ଶ୍ରେଷ୍ଠ ଗୋଟିଏ ମାଗୁଣି

ମାଟିର କାମନା ମୋର

ସ୍ୱପ୍ନମୀଳ ଆକାଶର ଆକୁଳ ରଙ୍ଗିଣୀ ।

ପୃଥିବୀରେ ଏତେ ରଂଗ, ରୂପ, ରସ

ଏତେ ସ୍ୱାଦ, ଗଂଧ, ଅନୁରାଗ ।

ସ୍ୱପ୍ନ ଅଛି । ସ୍ୱପ୍ନ ନାହିଁ । ମୃତ୍ୟୁ ଅଛି । ମୃତ୍ୟୁ ନାହିଁ ।

ସବୁ ଅଛି । ପୁଣି କିଛି ନାହିଁ ।

ତଥାପି ମୁଁ ଖାଇଁବାର ଆକୁଳ ନିଶାରେ ଜଳେ

ଯଦ୍ୟପି ମୁଁ ସବୁଜାଣେ । ଆମେ ମିଛ ।

ଏବଂ ମିଛ ଆମ ଦେହ । ଆମ ଅଭିମାନ ।

ସବୁ ମିଛ ଜାଣୁ ଜାଣୁ । ମିଛରେ ସ୍ୱାଦୁରେ ଲୁବ୍ଧ ।

ଧାଇଁଅଛି ଯୋଜନ ଯୋଜନ ।

ତୁମର ଅଲତା ପାଦ । ରକ୍ତରାଗ ଛଳନାରେ

ହଜିଯାଏ ପ୍ରଜ୍ଞା ମୋର । ହଜିଯାଏ ସକଳ ଜିଜ୍ଞାସା ।

କେଉଁ ମୋକ୍ଷ ଅଛି ସେଠି ? କେଉଁ ସିଦ୍ଧି ?

କେଉଁ ଆକର୍ଷଣ ? ମୋତେ ଡାକେ ଅହରହ ।

ତମେ ତ ଜାଣନା କିଛି । ସୁନ୍ଦରୀ ଗୋ !

ଏଇମାତ୍ର ତୁମକୁ ମାଗୁଣି ।

ଅତି ଶ୍ରେଷ୍ଠ ଅତି ଅକିଂଚନ ।

ଗୋଟିଏ ମାଗୁଣି ମୋର ତୁମର ଅଲତା ପାଦ ।

ସେ ପାଦରେ ଗୋଟିଏ ଚୁମ୍ବନ ।

□□□

# ରହସ୍ୟର ନୀଳମେଘ

ରହସ୍ୟର ନୀଳ ମେଘ ବିନ୍ଦୁ ବିନ୍ଦୁ ଅଶ୍ରୁ ହୋଇ ଝରେ
ତୁମରି ଆଖିରେ

ଅନୁପମା ! ରୂପବତୀ । ବର୍ଣ୍ଣମୟୀ । ପବିତ୍ର ପୃଥିବୀ
ଆଜ ମୁଁ କେଉଁ କକ୍ଷଚ୍ୟୁତ ଦୁଷ୍ଟଗ୍ରହ ତୁମରି ସୀମାରେ
ମୋ ଆଖିରେ ଅଭିଜ୍ଞାତ ପାପର ସକାଳ ।

ଅନୁପମା ! ତୁମ ପ୍ରିୟ ପୃଥିବୀର ପଲ୍ଲବିତ ଆନନ୍ଦର
ଲହରୀ ମେଖଳା ।
ପ୍ରଚୁର ଶସ୍ୟର ସ୍ୱପ୍ନ । ଅରଣ୍ୟର ମୁଗ୍‌ଧ ମାୟା ।
ଅହଲ୍ୟା ମାଟିର ଇଚ୍ଛା ଅନନ୍ତ କାଳର ।

ଚନ୍ଦନ ବନର ଗଂଧ । ବିଳାସିନୀ ଝରଣାର
ଛଳ ଛଳ ସରମୀ ଭଙ୍ଗିଣୀ ।
ତୁମ କେଶ ଆଖି ଓଠ ଚିବୁକରେ ଠୁଳହୁଏ ।
ଠୁଳହୁଏ ତୁମ ସର୍ବାଙ୍ଗରେ ।
ଆଜ ମୁଁ ସହସ୍ର ସୂର୍ଯ୍ୟର ତାପେ ପୋଡ଼ି ପୋଡ଼ି
ବୁଲୁଅଛି ଯାଯାବର ବିଶାଳ ବିଶ୍ୱର ପଥେ
ଖୋଜି ଖୋଜି ଜୀବନର ଏକବିନ୍ଦୁ ମଧୁ ।
ଅକସ୍ମାତ୍ ଏଇ ତୁମ ପୃଥିବୀର ରୂପ ରସ
ମୋ ଦେହରେ ଜଗାଇଛି
ପିପାସାର ଅସ୍ୱାଦିତ ସ୍ୱାଦୁ ।

ଏଇ ମୋର ନିରୁଦ୍ଦେଶ୍ୟ କାମନାରେ କଳଙ୍କିତ
ତୁମେ ଯଦି ହେ ପୃଥିବୀ ! ଦିଅ ଅଭିଶାପ ।
ଅନ୍ଧୋଭବ ଜଳିବାକୁ ସଗର ସନ୍ତାନ ପରି
ଅଗ୍ନିମୟ ଅନୁତାପ ଦାହେ ।
ଅମୃତର ଆକାଂକ୍ଷାରେ ଧାଇଁ ଧାଇଁ ଯଦି ମିଳେ
ଗରଳରେ ଭାଗ
ଅନୁପମା ! ତେବେ ଆଜ ଦୁଃଖ କିଣ ?
ଦୁନିଆଁର ସବୁ ଅକଲ୍ୟାଣ ଅକରୁଣା ଅପମାନ
ଶ୍ରାବଣର ଘନଘୋର ଅନ୍ଧକାର ରଜନୀରେ
ଅଣଗୃଣ ମେଘ ହୋଇ ଭାଂଗିପଡ଼ୁ
ମୋ ଉପରେ ସବୁ ଭାଂଗିପଡ଼ୁ ।

□□□

# ତମେ ଚାଲିଗଲା ପରେ

ତମେ ଚାଲିଗଲା ପରେ ସାମ୍ବାଦିକ ସହରରେ ଅବିଶ୍ରାନ୍ତ ଝଡ଼
ଚାରିଆଡ଼େ ହାହାକାର । ଚାରିଆଡ଼େ ନିରୁତ୍ତର ସମସ୍ୟାର ନିଭୃତ ସଂଳାପ ।
ତମେ ବା ଫେରିବ କେବେ ? ଅବା ଆଦୌ ଫେରିବନି ? ଅବା କେବେ
ଫେରିଯାଇ ହାତେ ଧରି ନୂଆ ଇତିହାସ ।
ସେତେବେଳେ କେଉଁଠାରେ ସ୍ମୃତି ଥିବ ? ବିଷୁବ ରେଖାରେ
ଅବା ମକର କ୍ରାନ୍ତିରେ ଅବା କେଉଁ
ମୃତ ବଳୟରେ ।

ତମେ ଚାଲିଗଲା ପରେ ସାରା ରାତି ସହରରେ ଅବିରାମ ବର୍ଷା ଓ ଅଂଧାର ।
ଅଂଧାରରେ ତୁମ ଛବି । ଆଖିର କରୁଣ ଛବି । ପ୍ରତିଧ୍ୱନି ତୁମରି କଣ୍ଠର ।
ତୁମରି ଦେହର ବାସ୍ନା । ଥାକ ଥାକ ପ୍ରତିଶ୍ରୁତି । ଥାକ ଥାକ
ଅନାଗତ ସ୍ୱପ୍ନ ଆଡ଼ମ୍ବର ।
ଘୁଞ୍ଚି ତୁମେ ହଜିଯାଅ । ଚାରିଆଡ଼େ ମିଛ ମାୟା । ଚାରିଆଡ଼େ ଅବଧୂତ
ଅଂଧାର ଅଂଧାର ।

ତୁମେ କେଉଁ କୁହୁକିନୀ ? ରକ୍ତରେ ଫୁଟାଅ ଫୁଲ । ଅଶ୍ରୁରେ ଜଳାଅ
ତୁମେ ସହସ୍ର ଦୀପାଳି ।
ତୁମ ନାଭି କସ୍ତୁରୀରେ ଭେଦିଯାଏ ବନଭୂଇଁ । ତୁମ ନିଶ୍ୱାସରେ
ଫୁଟେ କଦମ୍ବର ପ୍ରଥମ କାକଳି ।

□ □ □

# ବାରିପଦା

ବାରିପଦା । ଅନୁରାଗ ଆଲିମ୍ପିତ ଅନେକ ସନ୍ଧ୍ୟାର ମନୋରମ ଏକ ଯାଦୁଘର ।

ଯେଉଁଠାରେ ଝରିପଡ଼େ ଆକାଶରୁ ପ୍ରାଣମୟ ଅନାହୂତ ମେଘର ମହ୍ଲାର ।

ମୁଁ ନୁହେଁ ଆଷାଢ଼ ଅବା ମୟୂରର ଅନ୍ତରଂଗ କାମନାର ଛଂଦ୍ରାୟିତ ତଥ୍ୟ
ଅବା ଘନ ବନାନୀର ଉଚ୍ଛ୍ୱସିତ ସବୁଜ ପୂର୍ଣ୍ଣିମା ।

ତଥାପି ମୋ ହୃଦପାଶେ ଅନୁରକ୍ତ ରାଗିଣୀର ମାୟା ମହୋତ୍ସବ
ରଜୋବତୀ ମମତାର ନିବିଡ଼ ଚୁମ୍ବନ ଏବଂ
ପୁଷ୍ପିତ ସୁଷମା ।

ବାରିପଦା । ବିନ୍ଦୁ ବିନ୍ଦୁ ଅଶ୍ରୁର କୋମଳ ଗାଥା ।
ଅନେକ ବିନିଦ୍ର ରାତି ।
ନିଭୃତ କବିତା ।
ମୁଁ କେଉଁ ଅଜଣା କବି । ରୂପ ରସ ଗଂଧ ଅନୁରାଗୀ ।
ଚିରନ୍ତନ ପ୍ରେମର କାଂଗାଳ ।
ଜାଣେନା ମୁଁ ଦୀର୍ଘ ଦିନ ଖୋଜୁଅଛି କାହାର ଠିକଣା ।
କେଉଁ ନାଁ ? କେଉଁ ନଈ ?
କେଉଁ ନକ୍ଷତ୍ର ?
ଅବା ଅକସ୍ମାତ୍ ଦିନେ ତା ସହିତ ଦେଖାହେବ ।
ପରସ୍ପର ହେବ ପରିଚୟ ।

ବାରିପଦା । ତରୁଣୀର ଅନାବୃତ ସ୍ତନ ଭଳି କ୍ଳାନ୍ତ ମ୍ଳାନ କେଉଁ ଦିଗ୍‌ବଳୟ ।
ସହସ୍ର ସୁଗଂଧରାଜ ମହକରେ ଜଳିଯାଏ ଯେଉଁଠାରେ ନିସଂଗ ଅଂଧାର ।
ଯେଉଁ ଠାରେ ଜଳିଯାଏ ଅନେକ ଦୁଃଖର ରାତ୍ରି କେଉଁ ସୋହାଗିନୀ
ଉତ୍ତପ୍ତ ଓଠରେ ।
ସ୍ମୃତିମୟ ସ୍ୱାଦମୟ ବର୍ଣ୍ଣମୟ ମୋ ସମୟ । ଏକାନ୍ତ ମୋ ଅନୁଗତ ।
ଏକାନ୍ତ ନିଜର ।
ବାରିପଦା । ରୂପଜୀବୀ ମହୀୟସୀ ଚପଳ ଆଖିର ଅକୁଣ୍ଠିତ
ରତି ସମ୍ଭାଷଣ ।
ମୋ ନୁଖୁରା ଦରବାର ଦର୍ପଣରେ କାହାର ଏ ଶ୍ରଦ୍ଧାତୁର ଛବି ।
କାହାର ଏ ନିବେଦିତ ମୌନ
ଅଭିସାର ।
ବିଶୃଙ୍ଖଳ ପବନରେ ଥରିଯାଏ ମନର ଗୋଲକ ଆଜ କାହାପାଇଁ ।
ଦୁନିଆର ଦିନ ରାତି ଛୁଇ ଆଲୁଅର ଖେଳ ପ୍ରଜାପତି
କିଛି ବୁଝେ ପୁଣି କିଛି
ବୁଝିପାରେ ନାହିଁ ।

□□□

# ମହାନଦୀ କ'ଣ ବୁଝେ ?

ମହାନଦୀ କ'ଣ ବୁଝେ ? କେଉଁ କଥ ଖୋଜେ ତାର ହଜିଗଲା ଚଇତର
ଗୋପନ ମାଧୁର୍ଯ୍ୟ ।

ଆଜି ତାର କେଉଁ କୂଳେ ଝରିଯାଏ କେତେ ଶୋଷ । ଅବଶୋଷ ।
କେତେ ଅଶ୍ରୁ-ଅନୁରାଗ । ଝରିଯାଏ କେତେ ଦୀର୍ଘଶ୍ୱାସ ।

ଯୋବ୍ରା ଘାଟ ଆକାଶରେ ସଜ ନୁହଁ । ବର୍ଷା ନୁହଁ । ମୋ ଜୁଲାଇ
ଏକା ଏକା ନୀରବ ଉଦାସ ।

କେଉଁ ଦୂର ଦିଗନ୍ତରୁ ଭାସି ଆସେ କାହାର ଏ ଅଶବ୍ଦ ସଙ୍ଗୀତ ?
ସେ ସଙ୍ଗୀତ ସୁରଭିରେ ପୂରିଯାଏ ପ୍ରତି ପ୍ରାଣକୋଷ ।

ମହାନଦୀ କ'ଣ ବୁଝେ ଯୌବନର ଅଦ୍ଭୁତ ପ୍ରବାସ ।

କଣ୍ଟକ ସହର । ଆକାଶରେ ମେଘ ଏବଂ

ମେଘେ ମେଘେ ଶାପଗ୍ରସ୍ତ ଯକ୍ଷର ଚୁମ୍ବନ ।

ପ୍ରତୀକ୍ଷାରେ କ୍ଲାନ୍ତ ଆଖି । ଦୀର୍ଘଦିନ । ତଥାପି ପ୍ରତୀକ୍ଷା ।

ଯଦିଓ ଏକଥା ସତ ଅସମ୍ଭବ କାହାର ଆସିବା ।

ମଣିଷର ଭିଡ଼ ବଢ଼େ । ଭିଡ଼ କମେ । ଟ୍ରାଫିକ ପୋଲିସ ହାତ ।

ହୁଇସିଲ । କଲେଜ ସ୍କୋୟାର । ସବୁଠିକ୍ । ସବୁ ପ୍ରାତ୍ୟହିକ ।

ଗୋଟିଏ ଅବୁଝା ମନ କାହାର ଠିକଣା ଖୋଜେ ?

କାହାର ଠିକଣା ? ଯେତେସବୁ ବୁଝା ଲୋକ

ସବୁଗୁଡ଼ା ଏଡ଼କ ଅବୁଝା ?

ମହାନଦୀ କ'ଣ ବୁଝେ ? ଗତ ବଂଧା ପଥର ପଥୁକ ।

ଗତବଂଧା ଗୀତର ଗାୟକ ।

କ'ଣ ବୁଝେ ଦୁନିଆର ବଦଳ ଖବର ?

କିଛି ବୁଝେ ପ୍ରଜାପତି । ଜାଣିଛି ରକ୍ତର ସ୍ୱାଦୁ ।

ଚାଖିଛି ପ୍ରୀତିର ମଧୁ । ମୃତ୍ୟୁର ଶୀତଳ ବାସ୍ନା ।

ପାପର ପରମ ଶ୍ରଦ୍ଧା । ଜୀବନର

ସହସ୍ର ବସ୍ତ୍ର ।

□ □ □

# ବ୍ରହ୍ମପୁର କିଛି ଜାଣେ

ବ୍ରହ୍ମପୁର କଛି ଜାଣେ । ଆକାଶରେ ଘନୀଭୂତ ମେଘ ଭଳି
ଆମର ସଂପର୍କ କପରି ନବଡ଼ ଥିଲା ।
ଥିଲା ଦନେ ଶ୍ୟାମଳ ସୁନ୍ଦର ।

ମହୁଆ ଫୁଲରେ ଭର୍ତ୍ତ ଗଡ଼ଜାତ ଅରଣ୍ୟର ସ୍ୱପ୍ନ ପରି ।
ସ୍ୱପ୍ନ ଆମ କେଉଁପରି ବ୍ୟାପିଥିଲା
ଯୋଜନ ଯୋଜନ ।

ପରସ୍ପର ଅପେକ୍ଷାର ବହୁ କ୍ଲାନ୍ତହୀନ ଛଥି ଯାଉଥିଲା ଝରି ।
ଝରି ଯାଉଥିଲା କେତେ ଶିମୂଳୀର ଲୋହିତ ପିପାସା ।

କେବେ ଆମ ସାନ୍ନିଧ୍ୟର ନଭୃତ ଫସଲ ଧରି ଥିଲୁ ଆମେ
ପରସ୍ପର କୋଣାର୍କର ମନ୍ଦିର ମିଥୁନ ।
ଥିଲୁ କେବେ ଚିଲିକାର ନୀଳଜଳ ଅନୁରାଗ ଆକୁଳ ମରାଳ ।

ବ୍ରହ୍ମପୁର କିଛି ଜାଣେ । ମଧୁଖୋର ପ୍ରଜାପତି କେଉଁପରି ଅଂଧାରରେ
ପରିଚୟ ଖୋଜିଯାଏ ସାରାରାତି ଉଜାଗର ରଜନୀଗଂଧାର ।

ଜଗନ୍ନାଥ ଦେଉଳରେ ସକାଳ ଆଳତି ଧୂପ ଆଟୋପରେ ଝଲମଲ ଆଖି
ଯୋଡ଼ହସ୍ତ ନତଜାନୁ ଆକୁଳ ପ୍ରାର୍ଥନା କେଉଁ ଗାଂଧାଙ୍କର ।

ଛତ୍ରପୁର ଛଳ ଛଳ ମଧ୍ୟାହ୍ନରେ ଜଳ ଉଠେ କାହାପାଇଁ
ମୁଗ୍‌ଧ ହାହାକାର । ଡାଉନ୍ ଜନତା ଏବେ ଛୁଡ଼ିବାର
ଘଣ୍ଟା ଦେଲା । ହୁଇସିଲ । ସବୁଜ ପତାକା ।
ଆଉ କାହିଁ ଶେଷ କୋଳାହଳ ।

ପାଲୁର କୋଠିର ଭଙ୍ଗା କୋଠରୀରେ ଦିନ ସରେ । ରାତି ସରେ ।
ସୁଖ ଭୋଗ । ଦୁଃଖ ଭୋଗ । କେଉଁ ଦୂର
ପ୍ରବାସୀ କବର ହୋଇଯାଏ ସବୁ ଏକାକାର ।

ବ୍ରହ୍ମପୁର କିଛି ଜାଣେ । ମାୟାବିନୀ ରାତିର କୁହୁକ । ପ୍ରଜାପତି ଜାଣେ ।
ସବୁଜାଣେ ।
ଇତିହାସ କିଛି ଜାଣେ । ଜଙ୍ଗଲର ଅନାମିକା । ବାରବାଟୀ ଜାଣେ ।
ସବୁ ଜାଣେ ।।

□□□

# କୋଣାର୍କ-ଅଭିସାର

ଫଗୁଣର ଅଳସ ଶାଖାରେ ସେଦିନ ମଧ୍ୟାହ୍ନ ଥିଲା

ମୁକୁଳିତ ସ୍ୱପ୍ନର ଅରଣ୍ୟ ।

କର୍ତ୍ତବ୍ୟର ମାୟା ଭୁଲି ଯୌବନର ଚର୍ଯ୍ୟାଗୀତି ଗାଇବାକୁ

ଆସିଥିଲି ଦେହର ଆକୁଳ ଗଂଧ-ଆମ୍ରହସ୍ତ ଜବ ।

ତମେ ଥିଲ ପ୍ରିୟତମା । ତମେ ଥିଲ ସ୍ତବକିତ ମାଳତୀର

ଉଚ୍ଛଳ ଝରଣା । ଥିଲି ମୁହିଁ ମଧୁଲୋଭୀ

ଭ୍ରମରର ଉଚ୍ଛାଙ୍ଗ ଆଳାପ ।

କଳାର ଅମରାବତୀ ଭୁଲିଥିଲା ନିଜ ସ୍ୱପ୍ନ

ଦୁଇ ମୁଗ୍ଧ କଂପିତ ପ୍ରାଣର ଅନୁରାଗ

ସବୁଜ ବନ୍ୟାରେ ।

ସେଦିନ ପାଷାଣୀ କନ୍ୟା । ପୀନ ସ୍ତନା । ଦର୍ପିତ ଯୌବନା ।
ଲଜ୍ଜା ଏବଂ ଅଭିମାନେ ଯାଇଥିବେ ଜଳି ।

ଅଶାନ୍ତ ଚନ୍ଦ୍ରଭାଗା ଦେଖୁଥିବ କେଉଁପରି ତମ ଶାଢ଼ୀ
ଉଡ଼ାଏ ପବନ । ଆଜି ତମ ଅଧରେ ଅଳକେ
ହଜିଯାଏ ଅଗଣିତ ନକ୍ଷତ୍ର ଚୁମ୍ବନ ।

ଏବଂ ସୂର୍ଯ୍ୟ ଦେଖୁଥିବ କେଉଁପରି ତମେ ଆସି ଶୋଇପଡ଼
ମୋ କୋଳରେ । ପ୍ରତିବାଦହୀନ ତମ
ସର୍ବାଙ୍ଗରେ ବେପଥୁର ବିକଚ ମହ୍ଲାର ।

ପ୍ରତି ଶିଳାଖଣ୍ଡ ଏଠି ଦେଖୁଥିବେ ଜୀବନର ମୁଗ୍‌ଧ ଅଭିନୟ
ବଂଚିବାର ପ୍ରବଳ ବିନ୍ୟାସ । ମଣିଷର ମନ
ଆଜି ହୃଦୟର ଶୁଦ୍ଧ ବନମୟ ।

ମୁଁ ଦେଖିଚି ପ୍ରିୟତମା ତମ କ୍ଲାନ୍ତ ଆଖି କୋଣେ
କେଉଁପରି ବାଟ ବଣା ହୋଇଯାଏ ମାନସିଂହ ସ୍ୱଉଚ୍ଚଶ
ଭୃଙ୍ଗ ଅହଂକାର ।

ଭାଂଗିଯାଏ ତମ ଓଠ ଇଂଗିତରେ କେଉଁପରି
ଦୁନିଆର ଅଂଧ ବୁନିଆଦ
ଅନୁଦାର ଆଇନର ସହସ୍ର ଖସଡ଼ା ।

ମୁଁ ଦେଖିଛି ତମ ଦେହେ ଯୁଗ ଯୁଗ ଇତିହାସ । କଳାର
ଲଳିତ ଭାଷା । କବିତାର ଘର୍ମ ସମାହାର ।

ତମ ପ୍ରତି ପାଖୁଡ଼ାରେ ମହକର ଝଙ୍କୃତ । ଜ୍ୟୋସ୍ନାପ୍ଲୁତ
ବସ୍ତିର ମମତା । ତୃଷ୍ଣାତୁର ଆଷାଢ଼-ଶ୍ରାବଣ ।

□ □ □

# ଭୁବନେଶ୍ୱର : ସକାଳ କୁହୁଡ଼ି

ଭୁବନେଶ୍ୱର । ସକାଳ କୁହୁଡ଼ି । ଦୃଶ୍ୟ ତାର ଅତି ଚମତ୍କାର ।
କାହାର କୁହୁକ ଏଏ ? କାହାର ଛୁଆଁରେ ଆମେ
ଭୁଲିଯାଉ ପରିଚୟ । ଆମର ସକଳ ସଂଜ୍ଞା । ଦୂରଭୁର ସବୁ
ଇସ୍ତାହାର ।

କୁହୁଡ଼ି ଆଖିରେ ଦେଲା ମାୟାର ଅଂଜନ ।
ଓଠରେ ଦେଲା ତୃଷ୍ଣାର ସାଉଷ୍ଟସ୍ଥ ମୁଗ୍ଧ ଆଲିଙ୍ଗନ ।
କଣ୍ଠରେ ଶ୍ରାବଣ ଗୀତ । ଅଂଗେ ଅଂଗେ ସ୍ପର୍ଶଦେଲା
ବର୍ଷା ଆଜି ନଦାଘ ମାଟିର ।
ଛାତିରେ ବିଶ୍ୱାସ ଦେଲା ଆଲୋକ ବର୍ଷର ।

ଭୁବନେଶ୍ୱର । ସକାଳ କୁହୁଡ଼ି । ପୋଡ଼ିଗଲା ସୂର୍ଯ୍ୟର ତାତିରେ ।
ପୋଡ଼ିଗଲା ଅତୀତର ମୁକୁଳିତ ମଧୁମାସ । ସମ୍ମିଳିତ ଦ୍ରଷ୍ଟ୍ୟସ୍ୱର
ଉଲ୍ଲସିତ ଇତିହାସ । ପୋଡ଼ିଗଲେ ବହୁ ଶବ୍ଦ । ବହୁ ଅର୍ଥ ।
ଦେହଜ ଗଂଧର ନିଭୃତ ସମାସ

କୁହୁଡ଼ି । ମିଛର ଖେଳ । ଫୁଲ ଫୁଟେ ଧରେ: ନାହିଁ ଫଳ ।
କୁହୁଡ଼ି । ମିଛର ନଈ । ଶୋଷ ଦିଏ । ଦିଏ ନାହିଁ ଜଳ ।

□□

# ବୁଧବାର-ଅଶ୍ରୁବିଦାୟ

ତମେ ଆଜ ବୁଧବାର । ତମେ ଆଜ ଅଶ୍ରୁ ଆର୍ଦ୍ର ନୀରବ ସକାଳ ।
ଆଶାହୀନ । ଭାଷାହୀନ । ଏକାନ୍ତ କରୁଣ ।
ପ୍ରିୟତମା । ଏଇ ତମ ଶେଷ ପରିଚୟ ।
ଏଇ ଆମ ଶେଷ ଦେଖା । କ୍ୟାମ୍ପସର ପୋଡ଼ାଭୂଇଁ । ହଷ୍ଟେଲ ।
ବଉଳ ଗଛ । ଏପ୍ରିଲ ଆକାଶ । ବିଦାୟ । ବିଦାୟ ।

ପଛରେ ରହିଲା ପଡ଼ି । ଅଫଳନ୍ତ ଅନେକ କାମନା । ବହୁ ବଂଧା
ପ୍ରତିଶ୍ରୁତି । ଅନୁବର ଅନେକ ଶପଥ ।
ପଛରେ ରହିଲା ପଡ଼ି ଅନେକ ନିଭୃତ ସ୍ମୃତି । ଦିନ ରାତି ।
ସଞ୍ଜ ଓ ସକାଳ ।
ଛାଇ ଆଉ ଆଲୁଅର ଖେଳ ।

ଚିରକାଳ ରିକ୍ତ ମୂର୍ତ୍ତି । ଚିରକାଳ ଯାଯାବର । ବଂଧୁର ଜୀବନ ।
ଚିରକାଳ ଏକାକୀ ବିଦ୍ରୋହୀ ।
ନିଜର ସୌଭାଗ୍ୟ ଆଉ ଦୁର୍ଭାଗ୍ୟର କେନ୍ଦ୍ରସାରୀ ବଣିକ ମୁଁ
ଚିରକାଳ । ଚିରକାଳ ଅପୂର୍ଣ୍ଣ ଅଂଜଳି ।

ତମେ ଆଜ ନଷ୍ଟ ପ୍ର ରାଗିଣୀ । ପଦଜାତ ପୃଥ୍ୱୀର ଶୋକ ।
ତମେ ଆଜ ଆରକ୍ତ ସଂଧ୍ୟାର ଶେଷ ପଦାବଳୀ ।
ମୁଁ ଆହତ ଅଭିମାନ । ପ୍ରତ୍ୟାଖ୍ୟାତ ମମତାର ମଣି ।
ମୁଁ ବିକ୍ଷୁବ୍ଧ ସମୁଦ୍ରର ଦୀର୍ଘ ଅବଶୋଷ ।

□ □ □

# ତମେ କଥା ଦେଇଥିଲ

ତମେ କଥା ଦେଇଥିଲ ବାସର ଶଯ୍ୟାରେ ଆମ ପାଡ଼ିଯିବ
କାଶ୍ମୀରର ଶତ ।

ତମ ଦୁଇ କ୍ଲାନ୍ତ ଆଖି ସୂର୍ଯ୍ୟୋଦୟ ଦେଖୁଥିବ
ପାଇନ୍‌ର ଶାଖାରେ ଶାଖାରେ ।

ତମ ଗୀତ ଭାସୁଥିବ ଡାଲ ଆଉ ଉଲାରର ଜଳେ ।
ତମ ଦୃଷ୍ଟି ଛୁଇଁଥିବ ତୁଷାର ଲୁଣ୍ଡ଼ ମଖା ଅରଣ୍ୟର ଚୂଳେ ।

ତମେ:କଥା ଦେଇଥିଲ ବ୍ରାହ୍ମଣର ମନ୍ତ୍ର ମିଛ । ଅଗ୍ନି ମିଛ ।
ମିଛ ସାକ୍ଷୀ ଦଶ ଦିଗପାଳ ।

ତମେ ଓ ମୁଁ ଏକଦେହବା ଭାଂଗିଥିବୁ ଯୁକ୍ତିହୀନ ସମାଜର
ଶୃଙ୍ଖଳା, ସଂସ୍କାର ।

ତମେ ଓ ମୁଁ ରଚିଥିବା । ଯୁଗନ୍ଧର ପ୍ରଜ୍ଞା ଓ କରୁଣା ।
ତମେ ଓ ମୁଁ ରଚିଥିବା । ପରସ୍ପର ଅଳିଂଗିତ ବାଣୀ ଆଉ
ବ୍ୟାକରଣ । କୁମ୍ଭ ଆଉ କାମୋଦୀର
ମିଳିତ ମୂର୍ଚ୍ଛନା ।

ତମେ କଥା ଦେଇଥିଲ ମୁଁ ଜାଣେନି ଭଲ ପାଇ ।
ମୋତେ କେବେ ଭୁଲି ଯିବ ନାହିଁ ।
ମୁଁ ଖାଲି ତମକୁ ଚାହେଁ । ମୁଁ ଖାଲି ତମକୁ ଚାହେଁ ।
ଚାହିଁ ଦେଖ ମୋ ଆଖିରେ ଅହରହ
ନାଚେ ତମ ଛାଇ ।

ମୁଁ ଭୁଲିଛି ତମ ପାଇଁ ମୋର ସବୁ ପରିଚୟ । ମୋର ସବୁ
ଅଭିମାନ । ସୀମା ଓ ଅସୀମା । ଖାଲି ତମ ପାଇଁ ।
ମୁଁ ପାଗଳ ତମ ପାଇଁ । ସତକୁହ । ସତକୁହ । ଆଖିଛୁଇଁ
ଦେହ ଛୁଇଁ । ମୋତେ କେବେ ଛାଡ଼ିଯିବ ନାହିଁ ।

ତମେ ଆଜ କେଉଁଠାରେ ? ଜାଣେନା ମୁଁ ତମର ଠିକଣା ।
କବର ଭାଗ୍ୟରେ ଲେଖା ଚିରକାଳ ଭୋଗିବାର ପ୍ରୀତିର ବେଦନା ।

□□□

# ମୁଁ ମାଟିର ପୁରୁରବା

ତମେ ଆଜ ଫେରିବନି । ମୁଁ ମାଟିର ପୁରୁରବା ।
ପ୍ରିୟତମା । ହେ ଉର୍ବଶୀ । ତମ ପାଇଁ ଯେତେ ସବୁ
ବ୍ୟର୍ଥ ସମ୍ଭାଷଣ ।
ତମେ ଆସ । ଫେରିଆସ । ତମ ବିନା ବୃଥାସବୁ । ରାଜ୍ୟ ମୋର ।
ରାଜଧାନୀ । ସିଂହାସନ । ରାଜାର ଗୌରବ ।

ଫେରି ଆସ ପ୍ରିୟତମା । ସେଇ ଆମ ସୁରକ୍ଷିତ ସଂସାରକୁ ।
ଯେଉଁଠାରେ ମିଶିଯାଏ ସ୍ୱର୍ଗ ମର୍ତ୍ତ୍ୟ । ଆକାଶ ପୃଥିବୀ ।
ଫେରିଆସ ହେ ଉର୍ବଶୀ । ପ୍ରଣୟର ପୁଷ୍ପିତା ପୂର୍ଣ୍ଣିମା ।
ଫେରି ଆସ ପୁରୁରବା ପ୍ରତୀକ୍ଷାର ଅନନ୍ତ କୋଳକୁ ।

ହେ ଋକ୍ ଅପ୍‌ସରା ତମେ । ପ୍ରେମର ପ୍ରମତ୍ତ ଊଷା ।
ପୌରୁଷର ପ୍ରାଣମୟ ଚିରନ୍ତନ ଶୂନ୍ୟ ହାହାକାର ।
ଯୌବନର ଲକ୍ଷ୍ମୀ ତମେ । ଲଳିତାଙ୍ଗୀ । ନୀଳପାଙ୍ଗୀ ।
ହେ ଅନନ୍ୟା ନାରୀ ।
ଚିରକାଳ ଶାପଗ୍ରସ୍ତ । ଚିରକାଳ ବିଚ୍ଛେଦରେ
ବଂଚିବାର ତମ ଅହଂକାର ।

ମୁଁ ମାଟିର ପୁରୁରବା । ଚିରକାଳ ଅନୁରାଗୀ । ହେ ଉର୍ବଶୀ !
ତମ ଗଂଧ । ତମ ଛନ୍ଦ । ଦେହ ଆଜି ବିଦେହର ।
ବର୍ତ୍ତମାନ । ଅବର୍ତ୍ତମାନର ।
ଚିରକାଳ ଉପାସକ । ଅନାହୃତ ବେଦନାର । ରକ୍ତାକ୍ତ ସ୍ୱାଦର ।
ଅକଳଙ୍କ କଳଙ୍କର । ଜର୍ଜରିତ ପବିତ୍ର ପାପର ।

□□□

# ତମେ ଏଇ ଝରିଯାଅ

ତମେ ଏଇ ଝରିଯାଅ । ଆକାଶରୁ ଝଡ଼ିଗଲା ପରି
ଇନ୍ଦ୍ରଧନୁ ରଂଗର କୁହୁକ ।
ଅବା ତମେ ଝରିଯାଅ । ପାହାନ୍ତି ସ୍ୱପ୍ନର ତାରା । କେଇ ଦଣ୍ଡ ଜଳ ଜଳ ।
ତମେ ନାହିଁ । ସକାଳର ଆଲୁଅ ମେଳାରେ ।

ତମର ହୃଦୟ ଅସ୍ତ । ସୁଖ ଦୁଃଖ । ହସ କାନ୍ଦ ।
କ୍ଷମାକର । ଭୁଲିଯାଅ ।
ଯେତେ ପ୍ରେମ । ଅଭିସାର । ନାଟକର ଶେଷ ଯବନିକା ।
ଏମିତି ଦୁଃଖର ରାତ୍ରି । ବାଟ ଘାଟ ଅଂଧକାର । ନିଷ୍ଠୁରଣ
ସମୟର ଉପହାସ । ଗୃହଅଡ଼େ ଝରାପତ୍ର । କାରୁଣ୍ୟ କାକଳି ।

ତଥାପି ତମକୁ ଖୋଜେ । ବହୁ ନିଦ୍ରାହୀନ ସ୍ୱପ୍ନ ।
ବ୍ୟାକୁଳ ସନ୍ତପ୍ତ ଦିନ ବହୁ ପ୍ରତିଶ୍ରୁତି ।
ତମେ କିନ୍ତୁ ଆସିବନି । ତଥାପି ଅବୁଝା ପଣ । ତମେ କେବେ
ମିଛ ନୁହଁ । ତମେ ନୁହଁ ବାଟଭୁଲା ପକ୍ଷୀଟିର
ଶେଷ ସମ୍ଭାଷଣ ।

ଋଷିକୁଲ୍ୟା ପୋଲ ଡେଇଁ ପ୍ରତିଦିନ ଟ୍ରେନ୍ ଯାଏ । ଡାକବାଲା
ନିତି ଆସେ । ପ୍ରତିଦିନ ଆଠଟାରେ ଠିକ୍ ଠିକ୍
ଶୁଣାଯାଏ ହକରର ଡାକ ।
ମୁଁ ଯେମିତି ପ୍ରତିଦିନ ଖୋଲାଏ ଶଠିର ତାଡ଼ା । ମୋ ସ୍ମୃତିର
ଆଲବମ୍ । କାଲେଣ୍ଡର ପିଛିଲା ତାରିଖ ।

□□□

# ସ୍ମୃତିର ଆନନ୍ଦ ଝୁରେ

ସ୍ମୃତିର ଆନନ୍ଦ ଝୁରେ । ତମରି ବିଦେହୀ ସତ୍ତା ଘେରିରହେ
ଦେହମନ କାମନା ବାସନା ।
ଯଦିଓ ଏକଥା ଜାଣେ ତମେ ମୋ ଗତାୟୁ ସଙ୍ଗ ।
ଏକଦା ଉତ୍ସବମୟ ଆଦିଗନ୍ତ ଐଶ୍ୱର୍ଯ୍ୟରେ
ତମେ ଥିଲ ପୁଷ୍ପବର୍ଣ୍ଣା ।

ଡାଳେ ଡାଳେ ଲେଟିଥିଲା ଯୌବନର ମଧୁଋତୁ ଅଳସ ଉଦାସ ।
ସୀମାହୀନ ସ୍ୱପ୍ନ ଥିଲା ପ୍ରଜାପତି ଡେଣାରେ ଡେଣାରେ ।
ପବନରେ ଭରିଥିଲା ମୁଂଜରିତ ଅଶୋକ ସୋହାଗ ।
ଆକାଶରୁ ଝରୁଥିଲା ରେଣୁ ରେଣୁ ଅମୃତ ପରାଗ ।

ସେଦିନ ମୁଁ ପ୍ରଲୁବ୍ଧ ଭ୍ରମର ପଦ୍ମର କୋଳରେ
ପୂରାଇଲି ରତି ଅନୁରାଗେ ପଖାଳି ନିଜକୁ
ମୋ ଭିତରେ ହଜିଗଲା ସସାଗରା ପୃଥିବୀର ସକଳ ବସ୍ତୁ
ଏବଂ ସକଳ ବସ୍ତୁ ମଧ୍ୟେ ହଜିଗଲା ଜୀବନର
ସକଳ ଜିଜ୍ଞାସା ।

ଆଜି ମୋ ଦିଗନ୍ତ ଦୃଷ୍ଟି ଅଣାପୂରା ଆକାଂକ୍ଷାରେ ଧାଏଁ
ପାରିହୋଇ ଦେହ ଆଉ ସମୟର ସୀମା ।
ତମେ ଗଂଗଶିଉଳୀର ଝରି ଝରି ଗଂଧଝରା ରାତିର କବିତା
ଝରିଯାଅ ଏତେବେଳେ
ଆଗୋ ପ୍ରିୟତମା ।

△ △ △

# ପ୍ରେମର ନାମ ବେଦନା

ପ୍ରେମରେ ବେଦନା ଏତେ
ବେଦନାରେ ଏତେ ପୁଣି ସୁଖ
ନିଆଁରେ ଦହନ ଏତେ
ଦହନରୁ ଝରଇ ଆଲୋକ ।

ଯେତେବେଳେ ଜାଣିଥିଲି ପ୍ରେମମାନେ ତମକୁ ପାଇବା
କେତେବେଳେ ସ୍ୱପ୍ନରେ ବା କେତେବେଳେ ଚୁମ୍ବନର
କେତେବେଳେ ଘନ ଆଶ୍ଳେଷରେ ।

ନିରନ୍ତର ତମ ଛବି ନାଚୁଥିଲା ମୋ ଆଖିରେ । ମୋ ମନରେ ।
ମୋ ସମସ୍ତ ହଜୁଥିଲା ନିରନ୍ତର
ତମ କାମନାରେ ।

ହୁଏତ ଆସିବ ତମେ କଦାଚିତ୍ ଏକାନ୍ତରେ
ଛାତି ପରେ ଗୁଚ୍ଛ ରଖି ନିଦ୍ରାଯିବ
କେଉଁ କ୍ଲାନ୍ତ ଅଳସ ନିଶୀଥେ ।

ହୁଏତ ଆସିବ ତୁମେ ବିନିଦ୍ର ରଜନୀ ଆମେ
ପୁହାଇବା ବସି ବସି
ପରସ୍ପର ଦେହ ଗନ୍ଧେ ହଜାଇବା
ପରସ୍ପର ନିଃସଂଗ ଚେତନା ।

ଆଜି କିନ୍ତୁ ମନେହୁଏ ପ୍ରେମ ମାନେ କିଛି ନୁହେଁ
ଗୁରୁ ଗୁରୁ ବେଦନାର ବୋଝ
ମେଘଘଞ୍ଚ ଆଷାଢ଼ ଆକାଶ ।

ଯାହା କେବେ ଅଶ୍ରୁ ହୋଇ, ବର୍ଷା ହୋଇ ଝରେ ନାହିଁ ।
ସ୍ମୃତିର ଉଚ୍ଛଳ ନଈ ବହୁଥାଏ
ମନର ଗୋପନ ଧାରୁ କୂଳ ଛୁଇଁ ଛୁଇଁ ।

ଆଜି ଦେହ ସୀମା ଡେଇଁ ଅଦେହର ପ୍ରଲୁବ୍ଧ ମମତା
ଡାକି ଆଣେ କେଉଁ ସୁଖ ?
ଜଳିବାର ପୀଡ଼ିତ ଆନନ୍ଦ ।

ଆଜି ରୂପ ସୀମା ଡେଇଁ ଅରୂପର ମୁଗ୍ଧ ମାଦକତା
କାହିଁକି ଆକୁଳ କରେ ?
ହଜାଇବା-ବ୍ୟଥାର ସଂପଦ ।

△ △ △

## ଯଦିଓ ଜାଣେନା...

ଯଦିଓ ଜାଣେନା ତମେ କେବେ
ଏ କବିତା ପଢ଼ିବ କି ନାହିଁ
ଯଦିଓ ଜାଣେନା ।

ତଥାପି କବିତା ମୋର ଝରିଯାଏ
ନରମ ନଦୀର ଗଂଧେ
ଅଳସ ଉଲ୍ଲାସେ ।

ରାତିର ରଜନୀ ଗଂଧା ଯେପରି ମହକ ଢ଼ାଳେ
ଆପଣା ଆବେଗେ ।

ଆଜ ମୁହିଁ ଏକାନ୍ତ ନିର୍ଜନ ।
ପ୍ରେମ ଆଉ ପିପାସାରେ ଭରେ ମୋର ଦେହ ମନ ପ୍ରାଣ ।
ଏ ମୋର କବିତା ଆଜ ପଠାଇଲି ଆକାଶକୁ
ମେଘେ ମେଘେ ଜାଗିବ ସ୍ପନ୍ଦନ ।

ଏ ମୋର କବିତା ଆଜ ପଠାଇଲି ସମୁଦ୍ରକୁ
ତରଙ୍ଗେ ତରଙ୍ଗେ ଲାଗିବ ସ୍ନିଗ୍ଧ ଜଳବୋଳ ।
ଏ ମୋର କବିତା ଆଜ ପଠାଇଲି ଗ୍ରହରୁ ଗ୍ରହକୁ, ନକ୍ଷତ୍ରରୁ ନକ୍ଷତ୍ରକୁ
ମହାଶୂନ୍ୟ ପଡ଼ିବ ଚହଲ ।

ଯଦିଓ ଜାଣେନା ତମେ କେବେ
ଏ କବିତା ପଢ଼ିବ କି ନାହିଁ
ଯଦିଓ ଜାଣେନା ।

ତଥାପି କବିତା ମୋର ଝରିଯାଏ...... ।
ଟପ ଟପ ବର୍ଷା ପଡ଼େ ପିଜୁଳି ଓ ସଜନା ଶାଖାରେ ।
ଘନ ନୀଳ ଅଂଧକାର ନୃତ୍ୟ କରେ ଘରେ ଓ ବାହାରେ ।
ଭିଜା ମାଟି ଗଂଧ ଉଠେ ଭିଜାବାୟୁ ସ୍ଥିର ଅଚଂଚଳ ।
ତମେ ଆଗୋ କେଶବତୀ
ଏତେବେଳେ ମନେ ପଡ଼
ତମ କେଶ ସ୍ନିଗ୍ଧ ଗଂଧେ
ହୃଦୟ ବିହ୍ୱଳ ।
ବିଛଣାରେ ଶୋଇ ଶୋଇ
ଖୋଜେ ତମ ଶରୀରର ଘ୍ରାଣ ।
ସୁଖ-ସ୍ୱପ୍ନ-ସ୍ୱାଦ-ଶାନ୍ତି
ସବୁ ମିଛ ଅବଶୋଷ ।
ସବୁ ମିଛ । ସବୁ ଅଘଟଣ ।
ତଥାପି କବିତା ମୋର ଝରିଯାଏ...
ଯଦିଓ ଜାଣେନା ତମେ କେବେ ଏ କବିତା
ପଢ଼ିବ କି ନାହିଁ...
ଯଦିଓ ଜାଣେନା ।

○ ○ ○

# ତୁମ ଦେହ ଗଂଧ ଖୋଜି...

ତୁମ ଦେହ ଗଂଧ ଖୋଜି ବୁଲୁଛି ମୁଁ ଦେଶୁ ଦେଶ ।
ସମସ୍ତର ଝର ଶ୍ରାବଣରେ ।
ଖୋଜୁଛି ମୁଁ ଦୀର୍ଘକାଳ କେଉଁଠ ମୁଁ ହଜାଇଲି
ବର୍ଷା ଭିଜା ମାଟିର ସୋହାଗ ।
କେଉଁଠି ମୁଁ ହଜାଇଲି ରୂପମଞ୍ଜ ଅରଣ୍ୟର
ପ୍ରାଣଭର୍ତ୍ତି ସବୁଜ ସୌରଭ ।
ଖୋଜୁଛି ମୁଁ ଦୀର୍ଘକାଳ ଅବା କେଉଁ ନକ୍ଷତ୍ରର
ସ୍ନେହମୟ ଗଂଧ ସମାଗ୍ରୁର ।

ଏକଦା ମୁଁ ତୁମ ଦେହ ଗଂଧେ ହୋଇ ମତୁଆଲା
ପିଇବାର ଆକଣ୍ଠ ନିଶାରେ ।
କେତେ କଣ୍ଟା ବଣ ବଲି ଦୂରପଥ ଆସିଥିଲି
ମହୁମାଛି ଆକୁଳ ଇଚ୍ଛାରେ ।
ପୃଥିବୀର କୋଳାହଳ ପଛରେ ରଖିଲି ପଡ଼ି
ଆକାଶରେ ଲେଖିଥିଲି
ମାଡ଼ଫେଂର ପକ୍ଷୀର କାକଳି ।
କୃପଣର ଲୋଭପରି ନାକ ଓ ଆଖିର ଭୋକ
ଆଚମ୍ବିତ ଆନନ୍ଦରେ ଦେଇଥିଲା ଘାରି ।
ତୁମ ଦେହ ଗଂଧ ଖୋଜି ସେଦିନ ମୁଁ ଧୀରେ ଧୀରେ
ଓହ୍ଲାଇଲି ବାଂଛିତ ସୀମାରେ ।
ନିଭୃତ ସମୟ ମୋତେ ହାତଧରି ଶିଖାଇଲା
ତୁମ ଦେହ ଆଘ୍ରାଣର ପ୍ରଥମ ଅକ୍ଷର ।
ସେ ଗଂଧରେ ଅଂତରର ଅନ୍ତଃପୁର ମହକିଲା
ପଲ୍ଲବିଲା ହୃଦୟର ମାଧବୀ ମଂଜରୀ ।
ସେ ଗଂଧରେ ଜୀବନର ନୂଆ ଗୀତ ସଂଚରିଲା
ଉପତ୍ୟକା ସ୍ୱପ୍ନ ଛୁଇଁ ଛୁଇଁ ।
ଏବଂ କଟ୍ଟି କାଳ ଗଲା ଆନନ୍ଦରେ ଉଲ୍ଲାସରେ
ତୁମ ଦେହ ଗଂଧରେ ଗାଧୋଇ
ଆଜ ପୁଣି ନିଃସଂଗତା ଆଜ ପୁଣି ହାହାକାର
ଘେରିଯାଏ ଦେହ ମନ
ସବୁ ବୁଝି ବୁଝି ହୁଏ ନାଇଁ ।

୦ ୦ ୦

# ଦୂର ନୀଳ ନକ୍ଷତ୍ରର...

ଦୂର ନୀଳ ନକ୍ଷତ୍ରର ଆଲୋକରେ ଝୁମି ଝୁମି ତମେ ଆଜ
କବା କଥା କୁହ ।
ଉତ୍ତରଳ ସମୁଦ୍ରର ନାବକ ମୁଁ ବାହି ଚାଲେ
ଦୂର ଯାତ୍ରା ପଥ ଏକା ଏକା ।
ପୃଥିବୀର କୋଳାହଳ ମୋତେ ଲାଗେ ନାହିଁ ଭଲ ।
ମୋତେ ଲାଗେ ନାହିଁ ଭଲ ଯେତେ ସବୁ
ମିଛ ଅହଂକାର ।
ନଜର ଚକିତ ଦୃଷ୍ଟି ତମକୁ ସ୍ମରଣ କରେ ।
ଭୁଲିବାକୁ ସମୟର ଲାଲ ଲାଲ
ଆଖିର ଧିକ୍‌କାର ।
ତମେ କ ପାରୁଛ ଦେଖି ମୁଁ ଯେ କେତେ ନିଃସ୍ୱ ଏଠି
ଐଶ୍ୱର୍ଯ୍ୟର କାରାଗାରେ ଥାଇ ।
ଜୀବନର ଅନୁରକ୍ତ କବ ମୁହିଁ ରୂପ ରସ ପିପାସାରେ
ପରମ ବିଶ୍ୱାସୀ ।
ସୁରଭିତ ହୃଦୟର ଗଂଧ ଚାହେଁ ଅହରହ
ଚାହେଁ ସ୍ୱପ୍ନ କୋମଳତା ସବୁଜ ଘାସର ।
ପ୍ରିୟତମା ଦେହ ସ୍ୱାଦ । ରୁଣୁ ରୁଣୁ ଚୁଡ଼ି ଗୀତ । ଛମ-ଛମ-ପାଉଁଜର
ମନଭୁଲା ମଧୁର ମିନତି ।
ତୁମେ କ ପାରୁଛ ଶୁଣି ମୋ ଚଞ୍ଚଳ ମଣିଷର ମୁକ୍ତି ଲାଗି
ଆକୁଳ ଜିଜ୍ଞାସା ।
ସବୁ ମିଛ ପରଂପରା । ସବୁ ମିଛ ଆଡ଼ମ୍ବର । ଛାଡିଦିଏ
ଦେହ ମନ ମୋର ।
ଶଠତାର ଅନ୍ୟନାମ ଆତ୍ମୀୟତା ବଂଧୁ ପରି ଜଣାଉଛି
ନିତି ଆସି ମିଠା ସମ୍ଭାଷଣ ।
କାହାକୁ ବା ବୁଝାଇବି ଜୀବନର ମଧୁଚକ୍ର କେଉଁପରି
ଲୁଟିଦିଏ ଦୁଃସମୟ ଦୁଷ୍ଟ ସଂଗପାଳ ।

★ ★ ★

# ଶିଳାଲିପି

ବାରମ୍ବାର ପଢ଼େ ବସି ଗୁମ୍ଫ ତଳେ ସବ୍ଗରେ
ତମେ ଯାହା ଲେଖି ଦେଇଗଲ
ସେଇ କେଇ ପଦ କଥା । ଯାହା ଆଦୌ ଲଭେ ନାହିଁ
ଖରାରେ ବର୍ଷାରେ କିମ୍ବା ସମୟ କ ଥୋଇପାରେ ନାହିଁ ।
ବାରମ୍ବାର ପଢ଼େ ବସି ସେଇ କେଇ ପଦ କଥା ।
ଜାଣେ ନାହିଁ କେଉଁ ଆନନ୍ଦରେ
ଧନ ମୋର ସରିଯାଏ । ରକ୍ତ ମୋର ସରିଯାଏ ।
ମୋ ପଢ଼ିବା ଜମା ସରେ ନାହିଁ ।

ସେଇଠାରୁ ଜନ୍ମନିଏ ଖିଅ ଖିଅ ଇତିହାସ । ଜହ୍ନରାତି । ତାରାଫୁଲ ।
ଭରା ନଈ ପାଣିର ମହକ ।
ନରମ ମାଟିର ସୁଖ । ଆକାଶର ନୀଳ ସ୍ନେହ । ପବନର ମିଠା ଆଲିଙ୍ଗନ ।
ଟୁପ୍ ଟାପ୍ କେତେ କଥା । ଆଖିଭରା ମାଦକତା ।
ବର୍ଷାଝରା ରାତିର ମମତା ।
ଦେହର ପାଚେରୀ ଡେଇଁ । ମନର ପାଚେରୀ ଡେଇଁ ।
ମରମରେ ଛୁଇଁଯାଏ କେଉଁ ସ୍ନିଗ୍ଧ ନୀରବ ବାରତା ।

ସେଇଠାରୁ ଜନ୍ମନିଏ ଖିଅ ଖିଅ ଇତିହାସ । ଅନେକ ବିଷାଦ ସ୍ମୃତି ।
ଅଶ୍ରୁ ଆଲେଖିକା ।
ପବନ ନିସ୍ତବ୍ଧ ରହେ । ଚନ୍ଦ୍ର ଯାଏ ମ୍ଳାନ ହୋଇ । ପକ୍ଷୀମାନେ
ନିଶ୍ଚୁପ ସଲାପ ।
ସଂଧ୍ୟାର ପ୍ରତୀକ୍ଷା କେବେ ମରିଯାଏ ପ୍ରତୀକ୍ଷାରେ ରାତି ହୁଏ
ଗଭୀରରୁ ଗଭୀର ।
ବିଚ୍ଛିନ୍ନ ସମସ୍ତ ସବୁ ଆପେ ଆପେ ପୋଡି ପାଡ଼ି ଭୁଲିଯାନ୍ତି
ନିଜ ଅଭିମାନ ।

ବର୍ଷ ମାସ ଦିନ ଆଉ ଠିକ୍ ଧରାପଡେ ନାହିଁ । ଫଟୋ ଚିଠି ଡାଏରୀ ବି
ସବୁ ଯାଏ ହଜି ।
ସ୍ମୃତି ତଳେ ବଂଚି ରହେ ସେଇ କେଇ ପଦ କଥା ଅକ୍ଷୟ ସଂପଦ
କେଉଁ ଶିଳାଲିପି ପରି
ଯୁଗ ଯୁଗ ରହି

★ ★ ★

# ଉପହାର

ତମରି ଐଶ୍ୱର୍ଯ୍ୟ ନେଇ ଗଢ଼ିଲି ମୁଁ
ମୋର ସ୍ୱପ୍ନଧାମ ।
ତମରି ଆଶ୍ଳେଷ-ମୁଗ୍ଧ ମୁଁ ଅଶୋକ ତରୁ ।
ଡାଳେ ଡାଳେ ଫୁଟାଇଲି ଫୁଲର ସ୍ତବକ ।
ତମରି ଉଷ୍ମତା ପିଇ ଭୁଲିଲି ମୁଁ
ରାଜ୍ୟ ମୋର । ପ୍ରଜା ମୋର । ପ୍ରିୟ ପରିଜନ ।
ତମରି ଅଶ୍ରୁରେ ଭିଜି ମୁଁ ଅଭିମାନୀ ଦୁର୍ଯ୍ୟୋଧନ
ହଜାଇଲି ସବୁ ଗର୍ବ । ସବୁ ଅହଂକାର ।
ମୁଁ କିନ୍ତୁ ପାରିନି ବାଛି ତମ ଲାଗି
ଯୋଗ୍ୟ ଉପଚାର ।
ତୁଚ୍ଛ ଲାଗେ ସବୁ ମୋତେ ପୃଥିବୀର ଦେଣ ନେଣ ।
ଛଳନାର ଛଳଛଳ ସ୍ୱପ୍ନ ।
ପ୍ରସ୍ତର ବା ଧାତବ ଫଳକେ ଆଙ୍କିବାକୁ ତମ ନାମ
ତମେ ହିଁ ତ ବାରମ୍ବାର କରିଛ ବାରଣ ।
ଗୋପିନୀ ହେବାକୁ ତମେ ଚାହିଁଅଛ ନିଜ ଇଚ୍ଛାମତେ ।
ଦାନର ବା କିବା ପ୍ରତିଦାନ ?
ତଥାପି ଅବୁଝା ମନ ତମ ସ୍ମୃତି ଦୀପଟିଏ ଜାଳିବାକୁ
କରେ ହାହାକାର ।
ତେଣୁ ଆଜ ତମଲାଗି ରଖିଗଲି ଏଇ ମୋର
କବିତାର ଶ୍ରେଷ୍ଠ ଉପହାର ।



# ବିଳାସୀ ବସନ୍ତ

ମନରେ ପାଲିଙ୍କି ଚଢ଼ି ବିଳାସୀ ବସନ୍ତ ବୁଲେ
କେଉଁ ଆନନ୍ଦରେ ବହୁ ଦେଶ ବହୁ ଜନପଦ
ନାଇଁ ହାତେ ମଧୁଭାଣ୍ଡ । ମସ୍ତକରେ କୁସୁମ ମୁକୁଟ ।
ନାଇଁ ନିଶ୍ୱାସରେ ଗଂଧ ମଳୟ ସମୀର
ତା ଲାଗି ସ୍ୱାଗତ ସଭା ବସେ ନାହିଁ ଅଂଗନେ ଅଂଗନେ ।
ମାଙ୍ଗଳିକ ଘଡ଼େ ନାହିଁ ଶଙ୍ଖସ୍ୱନା ପ୍ରମଦା କିଶୋରୀ
ଜଳେ ନାହିଁ ଅର୍ଘ୍ୟ ଦୀପ ପୁରେ ପୁରେ ବିପୁଳ ସମ୍ଭାରେ ।
ଫଗୁଣ ସଜାଡ଼େ ନାହିଁ ଶ୍ୟାମ ନବପଲ୍ଲବ ସମ୍ଭାର
ବସନ୍ତ ବୁଝେନା ବର୍ଷା । ବୁଝେନା ଶୀତ । ଖରାର ଖବର ।
ବସନ୍ତ ଯେ ସମସ୍ତର ଚିରନ୍ତନ ପ୍ରୀତିର ଦୋସର
ସେ ନୁହେଁ ଅଭ୍ୟସ୍ତ କେଉଁ ସଂକ୍ରମଣ ଅବା କେଉଁ
ଦୁର୍ବିନୀତ ପଞ୍ଚଶର ବାଣର କଷଣ !
ତା ଲାଗି ହୁଏନା ଲେଖା କବିର କୌଳିକ ସ୍ତୁତି ।
କବିତାର ଅଭିଜାତ ବିସ୍ତୀର୍ଣ୍ଣ ଇଲାକା ।
ନିଜ ଯାଯାବୃତ୍ତି ଗାନେ ଅନୁରକ୍ତ ବିଳାସୀ ବସନ୍ତ
ନିଜେ କବି । ନିଜେ ଫୁଲ । ପ୍ରଜାପତି । କବିତା, ଭ୍ରମର

△ △ △

# ଏଇ ଯେ ପୃଥିବୀ ମୋର

ଏଇ ଯେ ପୃଥିବୀ ମୋର
ସ୍ନେହରେ ଈର୍ଷାରେ ଜଳେ ।
ଜଳେ ପୁଣି ପାପରେ ପୁଣ୍ୟରେ ।

ଅଶ୍ରୁରେ ରକ୍ତରେ କେବେ
ଭିଜନ୍ତୁଏ ଏକାକାର
କେବେ ପୁଣି ଝଚଳଛ ଆଗ୍ନେୟ କ୍ରୋଧରେ
କେବେ ବିକଳ କ୍ଷୁଧାରେ ।

ଏଇ ଯେ ପୃଥିବୀ ମୋର
ଅନୁରାଗେ ରଙ୍ଗବର୍ଣ୍ଣ ।
ତୃଷ୍ଣାତୁର ମମତାରେ ଛଳ ଛଳ ।
କାମନା ବ୍ୟାକୁଳ ।

ସବୁଜ ଶ୍ରଦ୍ଧାରେ କେବେ
ଧୋଇଦିଏ ଜୀବନର ଶୋକ, ତାପ, ଖେଦ
ଦେହରେ ମନରେ ଦିଏ
ବଂଚିବାର ନିବିଡ଼ ଆସ୍ୱାଦ
ରୂପ ରସ ଗଂଧରେ ବିହ୍ୱଳ ।

ଏଇ ଯେ ପୃଥିବୀ ମୋର
ହସି ହସି କଣ୍ଟାର ମୁକୁଟ ପିନ୍ଧେ
ବିଷପାତ୍ର ଛୁଆଁଏ ଓଠରେ ।
ତଥାପି ତା ମୃତ୍ୟୁହୀନ ଆତ୍ମାର ଗୌରବ ଗୀତ
ଅହରହ ଗୁଂଜରିତ
ସମୟର ସହସ୍ର କଣ୍ଠରେ ।

କେବେ ପୁଣି ମୋ ପୃଥିବୀ
ବିକ୍ଷୋଭିତ । ବିଷାଦ ବିମର୍ଷ ।
ପ୍ରତାରଣା ଗ୍ଲାନିରେ ମଳିନ ।

ତଥାପି ତା ଯାତ୍ରାପଥେ
ଅଶଂକିତ ନିତ୍ୟ ଚଳମାନ ।
ପାଇବାକୁ ମୃତ୍ୟୁତୀର୍ଣ୍ଣ
ଆଲୋକିତ ଜୀବନ ସନ୍ଧାନ ।

୦ ୦ ୦

# କସ୍ତୁରୀ ନଦୀର ଗଂଧ

ଦିନେ କେଉଁ ଗଂଧନଦୀ ଆସିଥିଲା
ମୋର ଭଂଗା ମନକୁଡ଼ିଆର ନୂତନ ଅତିଥି ।
ବାଂଟିଦେଇ କସ୍ତୁରୀ ମହକ ।
ନିଭୃତ ମୋ ରକ୍ତର କୋଠରୀ ଉଚ୍ଛୁଳିଲା
ମୋ ଦେହର ନଗ୍ରେ ନଗ୍ରେ ପଡ଼ିଲା ଚହଳ ।

ସେଦିନ ମୁଁ ମ୍ଲେଚ୍ଛ ରାଜପୁତ୍ର
କାମନାର ଉତ୍‌କୋଷିତ ତରବାରୀ ଧରି
ଚଢ଼ି ନିଜ ବପୁସରି ଘୋଡ଼ା
ମାତାଲି ପବନ ପରି ଭ୍ରମି ବହୁ ପଥ
ବହୁ ରାଜ୍ୟ, ବହୁ ଜନପଦ କଲି ଅଧିକାର ।

ଦେଖିଲି ସେ ନଦୀ କୂଳେ କୂଳେ ରୂପ ରସ ଗଂଧର ବିପଣୀ ।
ଭ୍ରମରର ଗୀତ ଗୁଣ୍ଣ ଗୁଣ୍ଣୁ । କଞ୍ଚା ଘାସ ।
କୃଷ୍ଣଚୂଡ଼ା ରଂଗ ଆଡ଼ମ୍ବର ।
ଜାଣିଲି ସେ ନଦୀ ମହକରେ ହାଡ଼ରେ ବଇଁଶୀ ବାଜେ ।
ପାହାଡର ଗ୍ରୀଷ୍ମ ଫାଟି ଝରିପଡ଼େ ଝରଣାର ସୁଅ ।
ଠୁଣ୍ଠା ଗଛେ ଗଜୁରେ ବଉଳ ।

ଗଂଧାମୋଦେ ଜର ଜର ନିଜ ପରିଚୟ ଭୁଲି
ମୁଁ ଚାହିଁଲି ହଜିବାକୁ ଆଉ କାହା
ପ୍ରତୀକ୍ଷାର ଅକାତ ହୃଦରେ ।
ମୁଁ ଖୋଜିଲି ସବୁ ଫୁଲ । ମହୁମାଛି । ଇନ୍ଦ୍ରଧନୁ । ନୀଳ ଆଖି ।
ଜନ୍ମାନ୍ତ ମମତାରେ ମାଟି ଆଉ ଆକାଶର
ଗାଢ଼ ଆଲିଙ୍ଗନ ।

ହୁଏତ ଜଳିଲି କେବେ କାହା ନିଶ୍ୱାସରେ ମିଶି ।
ବର୍ଷା ହୋଇ ଝରିଗଲି କାହା ଅନୁରାଗ
ଅରଣ୍ୟ ସୀମାରେ ।
କାହାଲାଗି ପୁହାଇଲି ଅପେକ୍ଷାର ବିନିଦ୍ର ରଜନୀ ।
କାହା ଲାଗି ସଜାଡ଼ିଲି ଅଭିଷେକ ଉତ୍ସବର
ମଗ୍ନ ଆୟୋଜନ ।

ତା ପରେ ନିଜକୁ ଦିନେ କଲି ଆବିଷ୍କାର
ମୁଁ ଏକାନ୍ତ ନିଃସଂଗ ସମୟ ।
କାହିଁ ମୋର ଗଂଧନଦୀ ? କାହିଁ ତାର ଈପ୍‌ସିତ ଖବର
ଆଜି କିନ୍ତୁ ସ୍ୱପ୍ନ ସ୍ମୃତି ଚେତନାରେ ଖେଳିବୁଲେ
କର୍ପୂରର କଣା ପରି କସ୍ତୁରୀର ମହ ମହ
ମହକର ଘର୍ଘ ଇସ୍ତାହାର ।

○ ○ ○

# ଦୀର୍ଘକାଳ ଏକା ଏକା

ଦୀର୍ଘକାଳ ଏକା ଏକା । କିଏ ବୁଝେ ସମୟର
ସୁଖ ଦୁଃଖ । ଇଚ୍ଛା ଓ ଅନିଚ୍ଛା ।
ସୁରକ୍ଷିତ ଅରଣ୍ୟରେ ନିଆଁ ଲାଗେ । ନିଆଁ ନିଭେ ।
ଆପେ ଆପେ ପଲ୍ଲବିତ ହୁଏ ସବୁ
ବୃକ୍ଷଲତା । ପକ୍ଷୀ ଗାଏ ଗୀତ ।
ଅନେକ ଅଶାନ୍ତ ଘୂର୍ଣ୍ଣି ବେଳେ ବେଳେ ଭାଂଗିଦିଏ
ସମୟର ଅଳସ ଚଇତ ।
କେତେ ଶୃଙ୍ଗ ଅଭିମାନ ଆକାଶ ଛୁଆଏଁ ଶିର ।
ଅସରନ୍ତି ସମ୍ଭାବନା ସ୍ୱପ୍ନରେ ବିଲୀନ ।
ଦୀର୍ଘକାଳ ଏକା ଏକା । କେଉଁ ସୁନ୍ଦରୀର ଛବି
ଆଙ୍କେ ବସି ନିଃସଂଗ ସମୟ ।
ଅବା କେଉଁ କିଶୋରୀର ଗୋପନ ପ୍ରେମର ସ୍ମୃତି ।
ଅବା କେଉଁ ତରୁଣୀର ଲୋଭମୀୟ
ନାଭି ଓ ନିତମ୍ବ ।

ପୁରୁଣା ଡାଏରୀ ପୃଷ୍ଠା ପଢ଼ୁ ପଢ଼ୁ ଖରାବେଳ ଶୋଇଯାଏ ।
ସକାଳେ ସାଉଁଟେ ଆସି ବିଛଣାରୁ ଇତସ୍ତତଃ ପଡ଼ିଥିବା
ପ୍ରେମପତ୍ର ଚିଠି ।

ଜହ୍ନ ରାତି ଖୋଜି ବୁଲେ ହଜିଲା ଗୀତର ସ୍ୱର
ଲାଜବତୀ ସହରର ରୁଣୁ ଝୁଣୁ
ଚୁଡ଼ିର ମିନତି ।
ଦୀର୍ଘକାଳ ଏକା ଏକା । ଶାର୍ଟ ପେଣ୍ଟ । ସିଗାରେଟ୍ ।
ହୋଟେଲ୍ । ସିନେମା ।
ଲାଇବ୍ରେରୀ । ବୁକ୍‌ଷ୍ଟଲ । କବିତାର ଖାତା ।
ପ୍ରିୟତମ ସହଚର । ଅସହାୟ ସମୟର ।
ଏମାନେ ହିଁ ବଂଧୁତାର ବର୍ତ୍ତମାନ
ଅନ୍ତରଂଗ ସ୍ୱର ।

# ଦିନର ବୟସ ବଢ଼େ

ଦିନର ବୟସ ବଢ଼େ । କ୍ରମଶଃ ମଧ୍ୟାହ୍ନ ହୁଏ ।
ଜଳନ୍ତା ସୂର୍ଯ୍ୟର ଶୋଷ ଶୋଷି ନିଏ
ରସବନ୍ତ ମୃତ୍ତିକାର ଆର୍ଦ୍ର ଆଡ଼ମ୍ବର ।

ଏବଂ ଅପ୍ରମିତ ଶୋଷ । ଶୋଷ । ଶୋଷ । ମୁଁ ତୃଷାର୍ତ୍ତ ।
ଉଦ୍ଧ ଉଦ୍ଧ ଗ୍ରୀଷ୍ମର ଖଣ୍ଡରେ ବାଟ ଭୁଲେ
ଖୋଜ ଖୋଜ ସାହାଣ୍ଡର ମରୂଦ୍ୟାନ ।
ଜଳର ସୋପାନ ।

କେଉଁ ମରୀଚିକା ନାଚେ ? ମୋ ଆଖିର ଆବର୍ତ୍ତରେ ।
କେଉଁ ମରୀଚିକା ? ଅବା ଦିଗନ୍ତର ନଦୀ ?
ଅବା କେଉଁ ସ୍ୱପ୍ନ ଛାୟା ଶ୍ୟାମ ସବୁଜିମା ।

ଅବଶ୍ରାନ୍ତ ପଥଖଣ୍ଡ । ପଦାଙ୍କର ଇତିହାସେ
ଲେଖି ନାହିଁ ନିଜର ସ୍ୱାକ୍ଷର ।
ନିଜର ଇଚ୍ଛାରେ ନିଜେ ମୁଁ ସୁନ୍ଦର, ରୂପମୟ ।
ନିଜର ଇଚ୍ଛାରେ ନିଜେ ଅନୁଚର । ଅକରୁଣାମୟ ।

ପ୍ରାଚୀନର ମୋହମୟ ବୁନିଆଦ ପାରିନାହିଁ ·
ମୋତେ ବନ୍ଦୀ କରି । ଫେରାର ଆସାମୀପରି
ମୁଁ ବୁଲୁଛି ଏକାନ୍ତ ଆତ୍ମୀୟ କରି
ଯେତେ ସବୁ ମୁହୂର୍ତ୍ତକୁ ମୋର ।

ଅହଂକାର ନହବତ ଉଲ୍ଲାସରେ ହଜନାହିଁ
ପ୍ରଜ୍ଞା ମୋର । ଅହାସିତ ନର୍ଲିପ୍ତ ଚେତନା
ମୁକ୍ତିର ଡ଼େଉ ମୋର । କାମନାର
ମାୟାଙ୍ଗୀ କାମିନୀ ।

ଆଜ ମୋ ଅମୃତ ବର୍ଷା ପ୍ରେମିକାର ନୀଳ ଆଖି
ଆକର୍ଷଣ ସୀମା ଡ଼େଇଁ କପରି ଆସିଲି ଚୂଲି
କପରି ଆସିଲି ଚୂଲି ମୁଇଁ ତ ଜାଣେନା ।

କପରି ଆସିଲି ଚୂଳି ପିତା, ମାତା, ଜ୍ଞାତ, ବନ୍ଧୁ
ସବୁର ପ୍ରୀତିର କାଣ୍ଡ଼ କାଟି ଦେଇ ଅନାୟାସେ—
ଅଶଂକିତ ନର୍ବିକାର ମୁକ୍ତି ଅଭିସାରେ ।

ଦୁଃଖ ନାହିଁ ଯଦିଓ ମୁଁ ପାଲଟେ ଲମ୍ପଟ ଅବା
ଦୁଶ୍ଚରିତ୍ର ଦୁର୍ଯ୍ୟୋଧନ । ଅବା ପାପୀ ଦର୍ପୀ ଦଶାନନ ।
ପଣରଖି ହାରିବାକୁ ରାଜ୍ୟ ମୋର । ସକଳ ସମ୍ମାନ ।

ଦୁଃଖ ନାହିଁ ଯଦିଓ ମୁଁ ଦେଖି ଦେହ ଲୋଭିବେଶେ
ହଜାଇବ ସକଳ ତପସ୍ୟା ତେଜ ।
ଦେବତାର ଆଶୀର୍ବାଦ ।
ତ୍ରିଭୁବନ ଜୟୀ ମୁହିଁ ସ୍ଖଳବୀର୍ଯ୍ୟ ମହିଷା ସୃଜନ ।

ଦୁଃଖ ନାହିଁ ଯଦିଓ ମୁଁ ଶାପଗ୍ରସ୍ତ ଚନ୍ଦ୍ର ହୁଏ
ହୁଏ ଅବା ଶାପଗ୍ରସ୍ତ କୁବେର ସନ୍ତାନ
କେଉଁ ନାରୀ ସମ୍ଭୋଗରେ ମାତ ।

ଦୁଃଖ ନାହିଁ ଯଦିଓ ମୁଁ ପାଲଟେ ସହସ୍ର ଯୋନି
ନଜର ପାପରେ ନଜେ କଳଙ୍କିତ
ମୁଁ ଅଭୁତ ମତିମାନ୍ ମୂଢ଼ ।

★★★

# ମୁଁ ଆସିଛି

ଦଳେ ସ୍ୱଘୋଷିତ କବି । ମୁଁ ଜାଣିଛି ସେମାନଙ୍କ ପରିଚୟ ।
ଦୀର୍ଘ ଇତିହାସ ।

ସେମାନେ କବି ନା କେଉଁ ଶିବିରର ଝଣ୍ଡାଧାରୀ । ଦଳେ ଭଣ୍ଡ-ଭକ୍ତ
ପ୍ରଚାରକ । ଦଳର ଦଲାଲ ।

ସେମାନେ ବୁଝନ୍ତି କ'ଣ କବିତାର ଅଭିମାନ । ଅକଳଙ୍କ
କଳାର ସମ୍ମାନ ।

ଅରାଜକ ରାଜ୍ୟ ପରି ସରସ୍ୱତୀ ବେଳେ ବେଳେ ହୋଇଯାନ୍ତି
ସେମାନଙ୍କ ବ୍ୟୂହର ଶିକାର ।

ଦଳେ ଅପଦାର୍ଥ କବି । ଧନରତ୍ନ ଏକାଡେମୀ ପାଠ ଓ ମୁକୁଟ
ପାଇଁ ଏକାନ୍ତ ପାଗଳ ।

ସେଥିପାଇଁ କେତେ ସ୍ତୁତି । ସ୍ତାବକତା । ଅଧର୍ମିତା । ପାଦ ମନ୍ଥି ।
ଅଧମ ଜନର ।

ସେମାନେ ଜାଣନ୍ତି କଣ କବିର ସୁଭଗ ସଜ୍ଜା । ବଂଚିବାର
ଉଚ୍ଚ ଅଂଗୀକାର ।

ନିଜର କୃତ୍ରିମ ପିଠା ବଡ଼ପଣ ଦର୍ପଣରେ ଦେଖୁଥାନ୍ତି
ନିଜ ପ୍ରତିଛବି । ମୂର୍ଖ ପୌରୁଷର ।

ମୁଁ ଆସିଛି ନୂଆ କବି । ଅଭିରାମ ହୃଦୟର ଭୂଷଣ ସାଧକ ।
ମୋ ପଛରେ ନାହିଁ କେଉଁ ସାମନ୍ତୀୟ ଅହଂକାର ।
କିମ୍ବା ନାହିଁ କେଉଁ ସଂଘ । କେଉଁ ଧର୍ମ ।
କେଉଁ ଅନ୍ଧ ଆଦର୍ଶର ଫମ୍ପା କୋଳାହଳ
ଜୀବନର ରସ ଚର୍ଯ୍ୟା ଗାଇବାକୁ ମୁଁ ଅସିଛି । ମୁଁ ଆସିଛି
ଧୋଇବାକୁ ମଣିଷର ସବୁ କୁସଂସ୍କାର ।
ମୁଁ ଆସିଛି ଶକ୍ତିଧର ପିନ୍ଧାଇବି ତା ଗଳାରେ
ଶ୍ରଦ୍ଧାପୂତ ପ୍ରାଣର ଝଙ୍କାର ।

★ ★ ★